# KALIKALA

( *A FARCE* )

BY

**RAM SANKER ROY.**

—o—

# କଳିକାଳ ।

( ପ୍ରହସନ )

ଶ୍ରୀ ରାମଶଙ୍କର ରାୟଙ୍କଦ୍ୱାରା

ବିରଚିତ ।

ଦ୍ୱିତୀୟବାର ମୁଦ୍ରିତ ।

—o-※-o—

CUTTACK,

Printed by the Cuttack Printing Company Limited.

1901

# ଭୂମିକା ।

ସନ ୧୮୮୬ ମସିହା ଡିସେମ୍ବର ମାସରେ ବଡ଼ଦିନ ବନ୍ଧ ଉପଲକ୍ଷରେ ମହାନଦୀ ମଧ୍ୟସ୍ଥ ଧବଳେଶ୍ୱର ପଠାରେ ବନଭୋଜି ହେବା ସମୟରେ ଆମ୍ଭର ସମସ୍ତ ବନ୍ଧୁମାନେ ନିତାନ୍ତ ଅନୁରୋଧ କରିବାରୁ ଏହି ପ୍ରହସନ ଖଣ୍ଡିକ ୨ ୪ ଦିନ ମଧ୍ୟରେ ଲିଖିତ ହୋଇ ତତ୍ପରବର୍ତ୍ତୀ ସରସ୍ୱତୀପୂଜା ସମୟରେ ଅଭିନୟାର୍ଥ ସେମାନଙ୍କୁ ଅର୍ପିତ ହୋଇଥିଲା । ମଧ୍ୟ ସେହି ବନ୍ଧୁମାନଙ୍କ ଅସୀମ ଯତ୍ନ ଓ ଉଦ୍ୟମରେ ସନ ୧୮୮୭ ମସିହା ମାର୍ଚ୍ଚମାସ ତା ୧୩ ଓ ୧୭ ରିଖ ଏହାର ଦୁଇଥର ଅଭିନୟ ହୋଇଥିବାରୁ ସାଧାରଣ ଲୋକେ ଏଥିର ବିଷୟ ଅଭିଜ୍ଞ ପାଇଅଛନ୍ତି । ସୁତରାଂ ଅତ୍ର ଭୂମିକାର ପ୍ରୟୋଜନ ନାହିଁ ।

ବର୍ତ୍ତମାନ ମୁଦ୍ରାଙ୍କନରେ ଏଥିର ଅନେକାଂଶ ପରିତ୍ୟକ୍ତ, ପରିବର୍ତ୍ତିତ ଏବଂ ସଂଶୋଧିତ ହୋଇଅଛି । ଯେଉଁ ବନ୍ଧୁମାନେ ଇତିପୂର୍ବେ ନାଟକ ରଚନାଠାରୁ ମୁଦ୍ରାଙ୍କନ ପର୍ଯ୍ୟନ୍ତ ଆମ୍ଭଙ୍କୁ ସାହାଯ୍ୟ କରୁଥିଲେ ଏଥର ମଧ୍ୟ ସେମାନେ ସାଧ୍ୟାନୁସାରେ ସାହାଯ୍ୟ କରିଥିବାରୁ ତାଙ୍କଠାରେ ବିଶେଷ କୃତଜ୍ଞତା ପ୍ରକାଶ କରୁଅଛୁଁ ଏବଂ ଏତଦ୍ଦ୍ୱାରା ଦେଶର କଥଞ୍ଚିତ୍ ଉପକାର ସାଧିତ ହେଲେ ଲେଖକ ଆପଣାକୁ ପରମକୃତାର୍ଥ ଜ୍ଞାନ କରିବ ।

କଟକ
୨୨ । ୧ । ୮୮ }  ଶ୍ରୀ ରାମଶଙ୍କର ରାୟ



## ଦ୍ୱିତୀୟବାରର ବିଜ୍ଞାପନ ।

'କଳିକାଳ' ମୁଦ୍ରିତ ହେଲା ପରେ ତାହା ସର୍ବସାଧାରଣ ଓ ସମ୍ପାଦକମାନଙ୍କଦ୍ୱାରା ସାଦରେ ଗୃହୀତ ହେବାରୁ କାଳକ୍ରମେ ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । 'ପ୍ରହସନ' ନାମକୁ ସମସ୍ତେ ଆପତ୍ତି କରିଅଛନ୍ତି ଏବଂ ଶେଷ ଦୃଶ୍ୟଟି ସମ୍ପୂର୍ଣ୍ଣ କରୁଣରସୋଦ୍ଦୀପକ ଥିବାରୁ ସେ ନାମ ସାର୍ଥକ ହୋଇ ନ ଥିବାର ଆମ୍ଭେ ସ୍ୱୀକାର କରୁଅଛୁଁ । ମାତ୍ର ଆମ୍ଭର ଶ୍ରଦ୍ଧାସ୍ପଦ ଉତ୍କଳଲେଖକାଗ୍ରଣୀ ରାୟ ଶ୍ରୀ ରାଧାନାଥରାୟ ବାହାଦୁର ଯାହା ଏହାକୁ "Serio-comic farce" ବୋଲି କହିଅଛନ୍ତି ତାହା ଯଥାର୍ଥ । 'Farce' ଶବ୍ଦର 'ପ୍ରହସନ' ବିନା ଭାଷାରେ ଅନ୍ୟ କୌଣସି ନାମ ନ ଥିବାରୁ ଆମ୍ଭେ ନୂତନ ନାମର ସୃଷ୍ଟି ନ କରି ତହିଁରେ ସନ୍ତୁଷ୍ଟ ହୋଇଅଛୁଁ । ଦୋଷ ହୋଇଥିଲେ ପାଠକେ କ୍ଷମା କରିବେ । ଏଥିର ନିମ୍ନଭାଗରେ ଆମ୍ଭେ ଏହି ପୁସ୍ତକ ସମ୍ବନ୍ଧରେ ପ୍ରୋକ୍ତ ରାୟ ବାହାଦୁର ଓ ତତ୍କାଳୀନ ସମ୍ପାଦକମାନଙ୍କର ମତ ପ୍ରକାଶ କଲୁଁ ।

ରାୟ ରାଧାନାଥ ରାୟ ବାହାଦୁରଙ୍କ ମତ । ୨।୬।୧୮୮୮ ।

I thank you for your kind present of "Kalikala" the first serio-comic farce in the Oriya language. I have read the book with great pleasure. Some of the characters are drawn with that fine perception of the ludicrous which is essential to comedy. Krishna Charan and and Bansibadan are almost life-like and we meet with their prototypes in society almost daily.

ଉତ୍କଳଦୀପିକା—୨୫।୨।୧୮୮୮ ।

ଉତ୍କଳଭାଷାରେ ଏପରି ଖଣ୍ଡିଏ ପୁସ୍ତକ ମୁଦ୍ରିତ ହେବାର ଦୃଷ୍ଟ ହୁଏ ନାହିଁ । * * * * *

ଦର୍ଶକମଣ୍ଡଳୀର ଚିତ୍ତବୃତ୍ତି ଆନ୍ଦୋଳନ କରିବାରେ ଗ୍ରନ୍ଥକାର କୌଣସି ତ୍ରୁଟି କରି ନାହାନ୍ତି ଓ ସେମାନଙ୍କ ହୃଦୟତନ୍ତ୍ରୀର ସୂକ୍ଷ୍ମତମ-ତନ୍ତୁ ସ୍ପର୍ଶରେ ମଧ୍ୟ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇଅଛନ୍ତି । ଗୋଟିଏ ଗୋଟିଏ ଚରିତ୍ର ଜୀବନ୍ତ ଓ ପ୍ରକୃତରୂପେ ଚିତ୍ରିତ ହୋଇଅଛି । * * * * ସମାଜର ଦୋଷ-ସଂଶୋଧନ ଏହାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଯାହା ଗ୍ରନ୍ଥକାର ମୁଖବନ୍ଧରେ ବ୍ୟକ୍ତ କରିଅଛନ୍ତି ସେ ଉଦ୍ଦେଶ୍ୟ ପ୍ରଚୁରରୂପେ ସିଦ୍ଧ ହୋଇଅଛି ଏଥିରେ ସନ୍ଦେହ ମାତ୍ର ନାହିଁ ଏବଂ ଏଥିର ଭାଷା ଓ ରଚନା ବାଞ୍ଛନୀୟ ହୋଇଅଛି ।

ସଞ୍ଚାରକ—୧୫।୩।୧୮୮୮ ।

ଏହି ନାଟକ ପ୍ରଚଳିତ ସଭ୍ୟସମାଜର ଗୋଟିଏ ବିଭତ୍ସ ଛବି ଅଙ୍କନ କରିଅଛି । * * * * ଖୁନ ମକଦମା ଉପସ୍ଥିତ ହେଲେ କୌଣସି କୌଣସି ଡାକ୍ତର ଓ ପୁଲିସ କର୍ମଗୃହ କିପରି ଦୁଇପଇସା ଉପାୟ କରନ୍ତି ତାହା ମଧ୍ୟ ବର୍ଣ୍ଣିତ ହୋଇଅଛି । ଓଡ଼ିଆ ବଙ୍ଗଳା ଓ ପାରସି-ମିଶା କଥା କେମନ୍ତ କୌତୁକଜନକ ତାହା ଗଙ୍ଗାଧର, ବଂଶୀବଦନ ପ୍ରଭୃତି ବ୍ୟକ୍ତିମାନଙ୍କ କଥୋପକଥନରେ ଜଣା ପଡ଼ୁଅଛି । * * * * ନାଟକ ମଧ୍ୟରେ ସ୍ଥାନେ ସ୍ଥାନେ ଯେଉଁ ନେପଥ୍ୟସଙ୍ଗୀତ ପ୍ରଦତ୍ତ ହୋଇଅଛି ତାହା ଉତ୍ତମ ହୋଇଅଛି । ନାଟକର ଭାଷା ମଧ୍ୟ ପ୍ରଚଳିତ ଓଡ଼ିଆ ଭାଷାରେ ଲେଖା ହୋଇଥିବାରୁ ପାଠକମାନଙ୍କ ପକ୍ଷରେ ସୁବୋଧ୍ୟ ହୋଇଅଛି । ଆଶାକରୁଁ ଏହି ନାଟକର ପାଠରେ ଓ ଅଭିନୟରେ କୁପଥଗାମୀ ଯୁବକମାନେ କୃଷ୍ଣଚରଣର ସୌଭାଗ୍ୟ ଓ ଦୁର୍ଭାଗ୍ୟକୁ ସ୍ମରଣ କରିବେ; ତାହା ହେଲେ ନାଟକର ଉଦ୍ଦେଶ୍ୟ ସଫଳ ହେବ ।

'ଓଡ଼ିଆ ଓ ନବସମ୍ବାଦ—୧୧।୬।୧୮୮୮ ।।

ଉତ୍କଳ ସାହିତ୍ୟ ଭଣ୍ଡାରରେ ନାଟକ, ଉପନ୍ୟାସ, ପ୍ରହସନ ନାହିଁ ବୋଇଲେ ହୁଏ । ଏମନ୍ତ ସ୍ଥଳେ କଳିକାଲ ପ୍ରହସନ ଖଣ୍ଡି ହସ୍ତରେ ପାଇ ଅମ୍ଭମାନଙ୍କ ଅତ୍ୟନ୍ତ ଆନନ୍ଦ ହୋଇଅଛି । ନାଟ୍ୟୋଲ୍ଲିଖିତ ଘଟନାଟି ନିତାନ୍ତ କଳ୍ପିତ ନୁହେ । ଉତ୍କଳ ଗୃହ ଏପରି ଘଟଣାବଳୀରେ ବର୍ତ୍ତମାନ ଜର୍ଜରିତ । କୃଷ୍ଣଚରଣ ପରି ବେଶ୍ୟାଶକ୍ତ ସୁରାପାୟୀ ଅନେକ କୁଳାଙ୍ଗାର ଆଜିକାଲି ଉତ୍କଳସମାଜରେ କାଳିମା ଢାଳି ଦେଉଅଛନ୍ତି, ବଂଶୀବଦନ ପରି ଅନେକ ଗାଁଅଉଡ଼ା ମାତାଲ-ଚୂଡ଼ାମଣି ଠାବ୨କେ ଦେଖିବାକୁ ମିଳେ । ରସମଞ୍ଜରୀପରି ଅନେକ ଉତ୍କଳାଙ୍ଗନା ସ୍ୱାମିର ଅସ୍ୱାଭାବିକ ଓ ପୈଶାଚିକ ବ୍ୟବହାରରେ ମରମରେ ମରି ଯାଉଅଛନ୍ତି । ଯାବନ୍ତି ବାହାର ଗୃହର ଘଟଣାଟି ଉତ୍କଳର ଦୈନନ୍ଦିନ ଘଟନାର ମୂର୍ତ୍ତିକର ଛବି । ହତ୍ୟା, ଫାସୀ, ଡହବଲ ଦ୍ୱେଷ ପ୍ରଭୃତି କାର୍ଯ୍ୟମାନ ମଧ୍ୟ ନୂତନ ନୁହେ । ଦୁଷ୍କର୍ମର ପରିଣାମର ଏହାହିଁ ଚରମ ଫଳ ନୁହେ । ଏହି ସମସ୍ତ ଘଟଣାବଳୀ ସଂଯୋଜିତ କରି ଗ୍ରନ୍ଥକାର ପୁସ୍ତକଟିକୁ ଖଣ୍ଡିଏ ସାମାଜିକ ନାଟ୍ୟରୂପେ ପରିଣତ କରିଅଛନ୍ତି । * * * * ଅମ୍ଭେମାନେ ସାଧାରଣ ପାଠକଙ୍କୁ ଖଣ୍ଡିଏ୨ କିଣି ପାଠକରିବା ନିମନ୍ତେ ଅନୁରୋଧ କରୁଅଛୁଁ । ଏପରି ପୁସ୍ତକ ଯେତେ ପ୍ରଚାର ହେବ ସେତେ ମଙ୍ଗଳ ।



## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

### ପୁରୁଷ ।

କୃଷ୍ଣଚରଣ ଦାସ ... ... ... ନବ୍ୟଯୁବକ ।

ବୈଷ୍ଣବଚରଣ ଦାସ ... ... କୃଷ୍ଣଚରଣର ପିତା

ଗଙ୍ଗାଧର ପଟ୍ଟନାୟକ
ବଂଶୀବଦନ } ... ... ଐ ସଙ୍ଗୀ ଦ୍ୱୟ ।

ମାଧଦାସ
ଅନାଦ } ... ... ... ଐ ଭୃତ୍ୟ ଦ୍ୱୟ ।

ଅବଧୂକ୍ଷା ... ... ... ତପସ୍ୱୀ ।

ଅମ୍ବାରିମ ... ... ... ବାବାଜୀ ।

ପରଶୁ ... ... ... ଭଡ଼ୁଆ ।

ବଳଗଜ, ଇନ୍ସ୍ପେକ୍ଟର, ହେଡକନେଷ୍ଟବଲ, କନେଷ୍ଟବଲ ଦ୍ୱୟ ଜଜସାହେବ, ଉକିଲ, ପେସ୍କାର, ତପସ୍ୱୀ, ଦପ୍ତରୀ, ଡାକ୍ତର ସାହେବ; ହାବୁଲି, ଦର୍ଜୀ, ମାରୁଆଡ଼ି ଓ ଇସ୍ପାର ବାବୁଗଣ ଇତ୍ୟାଦି ।

### ସ୍ତ୍ରୀ ।

ରସମଞ୍ଜରୀ ... ... ... କୃଷ୍ଣଚରଣର ସ୍ତ୍ରୀ ।

ଜନକଲତା ... ... ... ଐ ମାତା ।

ଯମୁନା ... ... ... ରସମଞ୍ଜରୀର ସହଚରୀ ।

ହରଦାସୀ ... ... ... ବୈଷ୍ଣବୀ ।

ପାଟଙ୍ଗବାଈ ... ... ... ବେଶ୍ୟା ।



# ଅମି ଆମି ।



## ପ୍ର ସ୍ତା ବ ନା ।

[ କଳିରାଜାର ସନ୍ନ୍ୟାସୀବେଶରେ ପ୍ରବେଶ ]

କଳି ।—(ପଦଚାରଣ କରୁ କରୁ) ଓଃ କି ପାପ ! ସତ୍ୟ, ତ୍ରେତା ଓ ଦ୍ୱାପର ଏ ତିନିକାଳ କେତେ ସୁନ୍ଦରରୂପରେ ଅତିବାହିତ ହୋଇଗଲା—ମୋର କପାଳକୁ ଏତେ ଯନ୍ତ୍ରଣା !—ପୃଥିବୀ ଆଉ ଏ ପାପଭାର ସହି ପାରିବ ନାହିଁ—ନିଶ୍ଚୟ ଏ ଭୟାନକ ପାପଭାରରେ ପୃଥିବୀ ବୁଡିଯିବ—ପ୍ରଳୟ ଅତି ନିକଟ ।—(ଗୀତ)

ରାଗିଣୀ ଇମନ—ତାଳ ଏକତାଳୀ ।

**ଦେଖ ମନ ହେ ଭବଲୀଳା—ଇହଲୋକେ—**
ପରମପାପରେ ବୁଡିଗଲା ରେ । ପଦ ।
କାହ୍ନ କି ଏଠି ରହିବୁ, ଧରଣୀ-ଭାର ଦେଖିବୁ
ପାପ ତାପ ଶାପ ସହ୍ୟ ଖେଳା । ୧ ।
ମାୟା-ବନ୍ଧନ ଯେତେ, ଛିଡଲାଣି ସବୁମତେ,
ପିତା ମାତା ଭ୍ରାତା ନାମ ମାତ୍ର । ୨ ।

ହାୟ ହାୟ ! ଏପରି ପୃଥିବୀରେ ରାଜତ୍ୱ କରି ସୁଖ କି ଲାଭ ? ମନୁଷ୍ୟମର ରାଜା ହୋଇ ରହିଲେ କେଉଁ ଫଳ ମିଳିବ ?—ନା—ଏ ରାଜତ୍ୱରୁ ଡୋର କୌପୀନ ପିନ୍ଧି ସନ୍ନ୍ୟାସୀ ହୋଇଯିବା ଲକ୍ଷଗୁଣେ ଶ୍ରେୟସ୍କର ।—ଯେଉଁ ଖରତର ପାପର ସ୍ରୋତ ବୋହୁଛି ଲୋକେ ତହିଁର

ଉଦ୍ଧାରିବା ବଡ଼ କଠିନ । ପାପପଙ୍କରେ ଲୋକଙ୍କର ମତି ଏତେଦୂରକ ଦୁର୍ନିମ୍ନ ହୋଇଯାଇଛି ଯେ ଭଲଆଡ଼କୁ ମନ ଆଦୌ ପ୍ରବେଶ କରୁ ନାହିଁ—ସୁତରାଂ ଏ ସଂସାର ତ୍ୟାଗ କରି ଯିବାହିଁ ଏକାନ୍ତ ଉଚିତ ! —(ଗୀତ)

ରାଗିଣୀ ଖମ୍ବାନଟ । ତାଲ କାଓ୍ୱାଲି ।

ଚଲରେ ମନ, କରବାକୁ ଧ୍ୟାନ
ବିଶ୍ୱେଶ୍ୱର ପୁଣ୍ୟ ଚରଣ ।
କି ସୁଖପାଇଁ କହ ରେ ରହିବୁ,
ଛାଡ଼ ସାର ସଂସାର ଧନ ।
ସ୍ଥିର ଖାର ଏ ଦୁଃଖ ସଂସାର,
ନାହିଁ ଛାର ଶୋଭାର ଭଣ୍ଡାର,
ସବେ ଲୋକେ ଉନମତ ସୁଖେ
କେବେ କର ଧରମ କରମ । ୧ ।

ଲୋକେ କେତେଦୂର ପାପାସକ୍ତ ହୋଇଛନ୍ତି ତାହା ଦେଖାଇବାର ନିମିତ୍ତ ଏ ରଙ୍ଗଭୂମି ଉଚିତ ହୋଇଛି—ଲୋକେ ଦେଖନ୍ତୁ—ମାତ୍ର ଅମ୍ଭର ଏତିକ !

[ ପ୍ରସ୍ଥାନ

ଯବନିକା ପତନ ।

———

# ପ୍ରଥମ ଅଭିନୟ ।

ପ୍ରଥମଦୃଶ୍ୟ—ରାଜପଥ ।

[ଗଙ୍ଗାଧର ପଟ୍ଟନାୟକଙ୍କ ଏକାକୀ ରାଜପଥରେ ଦଣ୍ଡାୟମାନ ।]

ଗଙ୍ଗାଧର ।—ଏତା ବଜଟାଏଡ—ଏ ଶୀତକାଳକୁ କେହି ମାରେ ନାହିଁ ଷାଳ ! ଲୁଗାଭିତରେ ବଜାଉଥା ସାର ଅଉ ବଜ ଭିତରେ ଶୀତବଜାଇ ସାର – ଅମୋଦ କରବ କର, ଏତେ ମଜା ଆଉ କୌଣସି କାଳରେ କର ପାରବ ନାହିଁ । ରସିକଙ୍କର ଗୁଦାମର ସାହସା କେମନ୍ତେ ଗୌପଦହରୁଅ ହୋଇଛି ! ହବଗୁଡ଼ାଏ ଯେ ସାଧକ ତ୍ରିଯାମା ବୋଲି କହିଗଲେ ସେ କଣ ଶୀତକାଳର ଗୁଣ ବାର ପାର ନ ଥିଲେ? କଣାଗୁଡ଼ାଏ ! ମୁଁ ଯେବେ ଅମରକୋଷ କର୍ତ୍ତାର ଅଞ୍ଚଳରେ ବସିଥାନ୍ତି ତେବେ 'ତ୍ରିଯାମା ସର୍ବଃ କଭରେ 'ଚୌଯାମାଶୀତକାଳୀନା' ଲଗାଇ ଦେଇଥାନ୍ତି ଯେ ପଣ୍ଡିତମାନେ କେତେ ଉପକାର ପାଇଥାନ୍ତେ ପର ! ଆରେ କେଉଁ ଜ ଅବଦୁଲ୍ଲା !

[ଅବଦୁଲ୍ଲାର ପ୍ରବେଶ ।

ଅବଦୁଲ୍ଲା । —ସଲାମ ବାବୁଜି !

ଗଙ୍ଗା । – ସଲାମ—ଆରେ ଏତାବେଳେ କଧର ଯାଉଛ ହେ ?

ଅବ ।—ହଜୁର ! ଖିଦମଦ୍‌ଗାଷ୍ଟେଁକା ବାତ କ୍ୟା ପୁଛତେହେଁ— ଉଧର ସଂଭକାଷ୍ଟ କାମ ଇଧର ଅବ୍‌ପେର୍‌ତେ ଫିର୍‌ତେ ବେଶ୍‌ରେ ମେଘ ପଯ୍ୟର୍ ଦର୍ଦ୍ଦ ହୋତିଯ୍ୟାବ ।

ଗଙ୍ଗା ।—କୃଷ୍ଣବାବୁକା ଖବର କଛୁ ଜାଣ ?

ଅବ । ହଜୁର ! ଏହ ଲଫାଫେ । ଯହକେ ଜଲଦ ଦେକେସେ ଅଓରଭ ଦବ୍‌କାରେ ବାବୁଲୋଗୋଁକୋ ଘରକୁ ଯାବେ ହୋଗା ! ( ପକେଟରୁ ଲଫାଫା ପ୍ରଦାନ । )

ଗଙ୍ଗା ।— ଏ କ୍ୟାଜ ?—ବନ୍ଧୁ ନିମନ୍ତ୍ରଣ କ୍ୟା ?—(ଲଫାଫାର ଉପର ଓଲଟାଇ ପାଲଟାଇ ଦେଖି ) ଏ ତ ବହୁତ ଲୋକଙ୍କ ନାମ ଲେଖାଗୟି—କ୍ୟା ?—ତୁମକୁ ମାଲୁମ ହୋ ?

ଅବ ।—ନେହିଁ ସାହେବ—ମିଳ୍‌କୁ ବଖତରେଁ ମାଲୁମ ହୋଗା — ହଜୁର ଇଧର ଦେଖଲିଜିୟେ ।

ଗଙ୍ଗା ।—( ଲଫାଫାମଧ୍ୟରୁ କାଗଜ ବାହାର କରି ପଢ଼ିସାରନ୍ତର ) ହାଁ ହାଁ—ଅରେ ତୁମ ବୁଝେ ନେହିଁ—ଆଜ ଯାଇଁକରକର ଅଜ ଘଡ଼ିକୁ ଆମମାନଙ୍କ ମଉଜ ହବ—କୃଷ୍ଣବାବୁଙ୍କ ମନ ଖୁସି ହେଁ-ପେନ୍‌ସିଲ ? (ପକେଟରେ ହସ୍ତପ୍ରଦାନ ଓ ନିଷ୍କାସନ) ପେନସିଲ ହେ ?

ଅବ ।—ହେହେଲିଜିୟେ— (କୁଦା ପକେଟରୁ ପେନ୍‌ସିଲ ପ୍ରଦାନ ।)

ଗଙ୍ଗା ।—( ପେନସିଲରେ ଆପଣାର ନାମ କାଟି ) ବହୁତ ଖୁଣି ଖୁସି ହୋ ଯାଉ ହୋଇ—ତୁମେ ବଡ଼ା ମଜବୁତ ମଣିଷ—ଖୁବ ବୁଝିବ । ମୋରକଥା କହି ଦେଙ୍ଗା—ମୁଁ ଠିକ ସମୟ୍-ମେ ହାଜର ଅସେଙ୍ଗା—କଛୁ ଅନ୍ଦେସା ନହୋ—ଲେ ( ଲଫାଫା ପ୍ରଦାନ )—ଅରେ ରହ ରହ । ବଂଶୀବାବୁ ଆସୁଛନ୍ତି ହେଁ—ତାଙ୍କୁ ଦେଖାଇ ଲେଙ୍ଗା ।

ଅବ ।—ଜି ହଜୁର ଆଇ ହୁଅ—ସଲାମ ବାବୁଜି !

ଗଙ୍ଗା ।—ଏ ବଂଶୀବାବୁ, ଏହି ଆସୁନ୍—ଗୁଡ଼ମର୍ଣ୍ଣିଙ୍ଗ ।

[ ବଂଶୀବାବୁର ପ୍ରବେଶ ।

ବଂଶୀ ।—ଗୁଡ଼ମରନିଙ୍ଗ । ( ଗଙ୍ଗାଧର ସଙ୍ଗେ ସେକହ୍ୟାଣ୍ଡ ) କି ସମ୍ବାଦ ? ଅବଦୁଲ୍ଲା ଏଖାନେ କେନେ ? ଓଟା ତୋର ହାତେ କି ରେ ?

ଗଙ୍ଗା ।—ଅଜି ଆମମାନର ସଗଲକେ କୃଷ୍ଣବାବୁର ନିମନ୍ତ୍ରଣ

ହସ୍ଵାଚେ—ଭୁମେମାନର ସଗଲେ ଛାର ଅମୋଦେ
ପନ୍ନୁଷ୍କବେନ ।

ବଂଶୀ ।—କ୍ରିଷ୍ଣବାବୁର ନିମନ୍ତନ ?—ଓଣ୍ଟା ଘବେ ଦ ନୋଟିସ୍ ?

ଗଙ୍ଗା ।— ହାଁ—ଭୁମର କାଁମଟା ଅମେ କାଟିଥ୍ବା ଦଛେ ?

ବଂଶୀ ।—ଗେଷ୍ ଗେମ୍ । ଭୁଇ ପଷ୍କ ବାଙ୍ଗଲା ବଲ୍ତେ ପାଇଁ ଦେ ଆମି ଆଗେ ଦେଖି ଦ ଲେଖା ହୟେଚେ ।

ଗଙ୍ଗା ।—(ନୋଟିସ ପ୍ରଦାନ ) ନନ୍—ଆମି ବୁଝି ଅନ ଯାଇଁ କରିକର ବାଙ୍ଗଲା ଅଭ୍ୟାସ କରଛେ । ଅର୍ ଏ ଓଡ଼ିଆ ଛଥା ଗୁନ—ତ କହବ—ହନ୍ହନ୍ ଓଡ଼ିଆଁ କହିବାତେ ହ୍ଲଗ୍ଦାର ହସ୍ବା ଗଲୁଣନ ।

ବଂଶୀ ।—( ନୋଟିସ ଦେଖି ) ଅରେ ଏଟା ଯେ ଅବାର ଉଡ଼େତେ ଲେଖା ହୟେଚେ—ବେଟା ଉଡ଼େ ମେଡ଼ାଦେର ଦେଶେର ଭାଷାତ ଭାଷା ତା ଅବାର ଏ ଉଡ଼େତେ ଲେଖା ହୟେଚେ !—ରେଭେଲ ପାର୍ଟିର ନିମନ୍ତନ୍ ଏସବ ଇଂରାଜୀତେ ଲିଖ୍ତେ ହୟ !—ପୋଡ଼ତ ଗଙ୍ଗାଧର୍ କି ଲେଖା ହୟେଚେ ( ନୋଟିସ ପ୍ରଦାନ । )

ଗଙ୍ଗା ।—( ନୋଟିସ ନେଇ) ମୁଁତ ସେଇଥ୍ବା କହୁଥିଲୁନ । ଅମ୍ଦେର ସଗଲମାନ୍ଙ୍କ ତ ଇଂରେଜୀ ଜାଣେ ନା ।

ବଂଶୀ ।—ତା ଉପରେ ଇଂରଜୀ ନୀଚେ ଉଡ଼େ ଲେଖେ ଥାକ୍ଲେ କି ହତୋ ନା ?

ଗଙ୍ଗା ।—ଅମ୍ଦେର ସଗଲ ବାଙ୍ଗାଲବନ୍ଧୁଗ କ ଇଂରେଜୀ ଜାଣେ ?

ବଂଶୀ ।—ହ୍ବୁ ଗେ—ଭୁଇ ପୋଡ଼ନା !

ଅଚ ।—ବାବୁ ଜେଗ ଜଲ୍ଦ କରକେ ଦେକେସେ ବନା ଅର୍ଡର କେତା ଜଗା ଯାପେଗା—ସାମ୍ ହୋ ଯାତାହେ ।

ବଂଶୀ ।—ଏକ୍‌ଟୁ ଥେମ୍ ବାବା, ଏହ ଏକ୍‌କେଟ୍ସ ସମସ୍ତ ଲାଗ୍‌ବେ ତୋ ତୁମ୍ ଚଲ ଯାଗା—ଦ୍ଵଇଘଣ୍ଟି କେନ୍ତୁମାତ୍ର ହୋଗା ନେଇ ।

ଗଙ୍ଗା ।—ତୁମ୍‌ଦେର୍ ବାଙ୍ଗାଲିଗୁନାକ୍ କଣ୍ଡ ନୟ । ଆମରା ଅଶୁକ୍ ବାଙ୍ଗଲା ପଢ଼ିଯିବ, ବୁଝିବ । ତୁମ୍‌ଦେର ଏକଟୁ ଓଡ଼ିୟା ହେଇଗଲେ ଅମ୍‌ନି ବୁଦ୍ଧି ଉଡ଼ ଯାୟ ।

ବଂଶୀ ।—ହୋଇ୍‌ରେ ବାବା ଭୁଇ ପୋଡ଼ୁକା ଅଗେ ରେ—

ଗଙ୍ଗା ।—ତ ଶୁଣ ପଢ଼ୁଚ୍ଛି । ( ନୋଟିସ ପଠନ ) ମହାଶୟ—ଅଦ୍ୟ ଏ ନଗରର ଶ୍ରୀମତୀ ପାର୍ବତୀ ଦାସୀ ବାଇଙ୍କ ଘରଠାରେ ନୃତ୍ୟଗୀତ ପାନର ଉଦ୍‌ଯୋଗ ହୋଇଅଛି । ଆପଣ ଅନୁକମ୍ପା ପ୍ରଦର୍ଶିତପୂର୍ବକ ଘଣ୍ଟ ଆଠଘଣ୍ଟା ସମୟରେ ସେଠାରେ ଉପସ୍ଥିତ ହୋଇ ମଜଲିସ ବିଭୂଷଣ କରିବାଦ୍ଵାରା ଚିରବାଧିତ କରିବେ ।—ବଶମ୍ବଦ ଶ୍ରୀ କୃଷ୍ଣଚରଣ ଦାସ ।

ବଂଶୀ ।—ଉଦ୍‌ଡେଟାଓ ବୁଝି ଠିକ ହୟ୍ୟେଚେ—ଅନୁକମ୍ପା ପ୍ରଦର୍ଶିତପୂର୍ବକ ମଜଲିସ ବିଭୂଷଣ କରେ ଚିର୍‌ବାଧ—ତ ?

ଗଙ୍ଗା ।—କରିବ ।

ବଂଶୀ ।—ହାଁ—କରବ । ବେଟା ଓଡ଼ିଆଓ ଯେମନ୍ ଲେଖକ ଓ ତେମ୍‌ନ ! କିଷ୍ଟବାବୁର ଆମାଦେର ସବ୍ ବିଦ୍ୟାୟ ପାଣ୍ଡିତ୍ୟ

ଅବ ।—ବାବୁ ଦେର୍ ହୋ ଯାତାହେ ।

ବଂଶୀ । ଦେ ଆମାର ନାମ୍‌ଟା କେଟେ ଓକେ ଶିଗ୍‌ଗିର ବିଦାୟ କରେ ଦେ ।

ଗଙ୍ଗା ।—( ଅବ୍‌ଦୁଲ୍ଲାଠାରୁ ଲଫାଫା ନେଇ ପେନସିଲରେ ବଂଶୀ ବାବୁର ନାମ କାଟି ଲଫାଫା ଭିତରେ ନୋଟିସ ରଖି ଅବଦୁଲ୍ଲାକୁ ପ୍ରଦାନ ) ଏହି ନିଅ ।

ଅବ ।—ହାମ୍ ଅବେତେ ବାବୁ ସାହେବ—ସଲାମ !

ଗଙ୍ଗା ।—ଆଜ୍ କେବେ ଯାବେନ୍ ବଂଶୀବାବୁ ?

ବଂଶୀ ।—ଯାଛି ଏକବାର ବାଡ଼ଥେକେ ଜଲ୍‌ଟଲ୍ ଖେଯେ ଆସି—
ଏକେବାରେ ଯେ ବେରୋଚେ ହବେ ଘଣ୍ଟା କାବାର ହୟେ ଯାବେ ।

ଗଙ୍ଗା ।—ତୁମ୍‌ଦେର ପରିବାର ଏଖାନେରେ ଅଛନ୍ତି ?

ବଂଶୀ ।—ହେଁ ।

ଗଙ୍ଗା ।—ତା ଘଣ୍ଟା କାବାର କରେଦୟେ ସକାଲକୁ ଅସିଲେ ଘରେ କି ହବେ ?

ବଂଶୀ ।—ହେଁ ବଲ୍‌ଲେ ଏକ୍‌କଥା—ଅର ତୋର ମାଇପଟା ଘରେ କିଛ କରୁ ଥାକୁବେ ?

ଗଙ୍ଗା ।—ଅମ୍‌ଦେର୍ ତ ଗାଁରେ ଅଛେ ।

ବଂଶୀ ।—ଏଇ, ଉଡ଼େଦେର ବ୍ୟାପାରଖାନା ଦେଖ୍‌ଲେ ଗାଯେ ଘଗ ହୟ—ଏଖାନେ ଓଦେର ପିଁଡ଼ିଅସ୍‌ଲେ କି ଜାତି ଯିବେ ?

ଗଙ୍ଗା ।—ତୁମ୍‌କେ ତ ଭଲ ଓଡ଼ିଆ କହୁଚେ ଅସେ ? —ପିଡ଼ି ଅସ୍‌ଲେ ଜାତି ନ ଯାଉ ତୁମର ପିଡ଼ିଅସି କଣ କରିବ ପକା ଉଚ ? କ୍ରିଷ୍ଣ ବାବୁର ସଙ୍ଗେ ତ ବାଇସାହେବଙ୍କ ଘରେ ଘଣ୍ଟା ଯିବେ—ମାଇପ ଘରେ କାନ୍ଦୁଚେ ଥାକବେ ।

ବଂଶୀ ।—ହୋକ୍‌ଗେ—ଏଖନ କ୍ରିଷ୍ଣ ବାବୁର କି ଉଦ୍‌ଯୋଗ ହୟେଚେ ଜାନ ?

ଗଙ୍ଗା ।—ନା—ଅମେ ଯାଚ ଦେଖିବ କ ପରସ୍ତୁତ ହଚେ ।

ବଂଶୀ ।—ଭାଇ ତୁଭ ବଲ୍‌ଲସ୍ ଯେନ ଅଜକେର୍ ଦନ ଗୁଜରିଚେ ଅମାଦେର ମଦେର ବ୍ୟବସ୍ଥା ହବେ ତା ନଇଲେ ଅର ଅମାର ଓଖାନେ ହଚେ ନା ।—ଅରେ ମାଧିଅ ଯେ ହୋଥା କ ମାଥାଯ୍‌କରେ ଅସ୍‌ଚେ—ଅରେ କରେ ମାଧି—ମାଥାଯ୍ କିଛ ଧଚେ ଶୁଲଚେ ?

ଗଙ୍ଗା ।—( ସ୍ୱଗତ ) କଣ ଯେ ଭୁଷ୍ଣ ବେଦେଗଣ୍ଡାଲୁ ଆଜ ଠକେଇ ଦେଲା କି ?

[ ମାଧ ଦାସର କାଠରେ ବାକ୍ସ ମୁଣ୍ଡରେ ଯେନ ପ୍ରବେଶ ।

ମାଧ ।– (ହାତ ଉଠାଇ) ଜୁହାର ସାନ୍ତେ !

ଗଙ୍ଗା ।— ସେ କଣ କରେ ମାଧିଆ !

ମାଧ ।—ସାନ୍ତେ ସେ ଭୁଷ୍ଣ ସାନ୍ତେ ଦୋକାନରୁ କଣ ବଦ୍ଦନା ଶରଡ କଣି କ ଦେଇଥବ ପିଉ ଯାଉଚ ।

ଗଙ୍ଗା ।—ବଦ୍ଦନା ଶରଡ କଣ ରେ ?

ମାଧ ।—କେଜାଣି ସାନ୍ତେ—ମୋ ମନରେ ରହୁନି ନାହିଁ—କଣ କହିଲେ ବନ୍ଦନା ଶରଡ—କବଦନା ଶରଡ ।

ବଂଶୀ ।—ଅବେ ଉଲୁ ଗୃଷା କୋଥାକାର ! ଗଙ୍ଗାଧର ବୁଝ୍‌ତେ ପାରଲେ, ଓ ବଲେଚେ ବେଦାନାର ଶରବତ—

ମାଧ ।—ହିଁ ହିଁ ବଦାନାଶରବତ, ବେଦାନାଶରବତ ।

ବଂଶୀ ।—ବେଟା ଏଇଟୁକୁ ଆସ୍‌ତେ ଆସ୍‌ତେ ଗସ୍ତାଯ୍ କୋଥା ଭୁଲେ ଗେଛେ—ଜେତେ ଗୃଷା ଆର ବୋକାର ସର୍ଦ୍ଦାର !

ଗଙ୍ଗା ।—ସେଇଯା କହ ଭଲା ।

ମାଧ ।—ଅବଧାନ ଆମ୍ଭେ ମୂରୁଖ ଭୂଷଣ୍ଡ ଲୋକ ଆମେ ସେସବୁ କ ଜାଣୁ ।

ବଂଶୀ ।—ଗଙ୍ଗାଧର ଏକ୍‌ବାର ଓର ମାଥାଥେକେ ନାମିଯେ ଦେଖାଯାକ୍ ଜିନଷ୍‌ଟେ କି ରକମ୍ ?

ଗଙ୍ଗା ।—ହଉ । ମାଧ ଦାସର ମୁଣ୍ଡରୁ ବାକସ ଓହ୍ଲାଇ ତଳେ ରଖି ) ଦେଖ ବଂଶୀବାବୁ !

ବଂଶୀ । (ଏକ ବୋତଲ ଉଠାଇ) ହୁରରେ ! ସାମ୍ପେନ୍ ଟାମ୍ପେନ୍ ନା ଏକେ ପଚା ବ୍ରାଣ୍ଡିଗୁଲୋ ଏନେଚେ । ଆମି ଢେର ବ୍ରାଣ୍ଡି ଖେଯେଚି—ଏକନ ସାମ୍ପେନ୍ ଖେଯେ ଯାବେନ୍ ବଲେ

ପାରିଲେ ବାଁଚି ଯାଏ । (ବୋତଲ ଯଥାସ୍ଥାନେ ରକ୍ଷି-
ଦେବାର । )

ଗଙ୍ଗା । (ଆଉ ଏକ ବୋତଲ ଉଠାଇ ଦେଖି) ସବୁ ବ୍ରାଣ୍ଡି—
ଦଉଜା ବ୍ରାଣ୍ଡିର ମଜା କୁଥାପ୍ତ ନାହିଁ । (ବୋତଲ ଯଥା
ସ୍ଥାନେ ରକ୍ଷି) ଯା ନେଇଯା—ଧ ।

ମାଧ—ମୁଁ ତ ଖାଁନ୍ତେ ତା ନେବ ନାହିଁ ।

ଗଙ୍ଗା ।—କାହିଁକ ?

ମାଧ ।—ବଗଣ୍ଡି ଗୁଡ଼ାଏ । ମୁଁ ନେଇଯିବ ?—ମୋ କାନ୍ଧରେ ବଟା
—ଲାଗିବ ।

ଗଙ୍ଗା ।—ଅରେ ନାହିଁ ସେ ବଗଣ୍ଡି କାହିଁକ ହବ— ନେ ଉଠା ।

ମାଧ ।—କେବେ—ଭୁମେତ ଏହିକ୍ଷଣି କହିଲ ସେ ବଗଣ୍ଡିଗୁଡ଼ାଏ
ଏ—ମୁଁ କଦାକାଲେ ଛୁଇବ ନ—ଶୁକର ରକ୍ଷିନନ ବୋଲ
କଣ ଜାଡ ନେବେ କ ?

ବଂଶୀ ।—ଯା ଚଲେ—ବେଟା ଏତଦୂର ଅଣିଛଲେ କ କରେ ?

ଗଙ୍ଗା ।—ଅରେ ସେ ବଗଣ୍ଡି କାହିଁକ ହବ, ବେଦାନା ସରବତ୍
ଓଲୁ ନା କଣ !

ମାଧ ।—କେବେଁ—ଯୁ କହଲେ ମୁଁ ମାନବ । ଅଣିଲାବେଳୁଁ ମୋ
ମନରେ ପାପ ଛୁଁଇଚ । ଜାଢର କଥା ନା କଣ !

ବଂଶୀ ।—ବେଟାର ଜାତ ଓର କାପଡ଼େ ବାନ୍ଧା ରୟେଚେ । (ଈଷତ
କ୍ରୋଧ ପ୍ରକାଶ କରି) ଭୁ ନେବ ନାହିଁ ତ ନବେ କେ ,
ବେଟା ନୟେଏଲେନ୍ଏତଟା, ଏଠି ଅସେ ପେଷି ଦେଖାଚ୍ଛେ ।

ମାଧ ।—ସାନ୍ତେ ଗସୁର କାହିଁକ । ମରଇଲେବ ମୁଁ ଛୁଇବ ନାହିଁ ।

ଗଙ୍ଗା ।—(କ୍ରୋଧ ପ୍ରକାଶ କରି) ଚୋଟେ କଣ ଭୁତ ଲାଗିଲା କ—
ନ କରୁଛ ନବ କଏ ? ଉଠଉଚୁ ନା ଦେଖିବୁ ଏହିକ୍ଷଣି ?

ବଂଶୀ ।—ମାର୍ ବେଟାକେ—ବେଟା ଡାମାସା କର୍ଚେ ।

ମାଧ ।—ଏଁ—ଯାବୋଲ କଣ ଜାଣ ନବ କି ?

ଗଙ୍ଗା ।—କି ଜାଣରେ ? ଉଠଉଠୁ ନା ଦେଖିବୁ ?

ମାଧ ।—କଣ ଦେଖିବ ? ମାରନ କେମନ୍ତେ ମାରବ—ବସନ୍ତେ, ଗୁଣ୍ଡାଏ ମୁ ଘଡ଼ ଯାଉ୍ ନ ଥିଲି କି ।

ବଂଶୀ ।—ଧର୍ତ ବେଟାର୍ ଚୁଲେ ।

[ବଂଶୀ ଆଉ ଗଙ୍ଗା ମାଧର ବାଲ ଧରିବା ଓ ଉଭୟେ ଝିଙ୍କାଝିଙ୍କି ହେଉଁ, ମାଧର ଖସି ପଳାୟନ ଓ ଗଙ୍ଗାର ତତ୍ପୃଷ୍ଠାରୁ ଧାବନ ।

ବଂଶୀ—ବେଟା ଫକ୍କେରଂ ଭଳ୍ପ ଜୋର କତ—ହାଉଟା ଲାଲ ହୟେଗେଲ ! ତୋଡ଼ାନ ଖେୟେଛ ବେଟାର ଏତ ଜୋର ଆର ଏକଟୁ ମାଂସ ଟାଂସ ଖେଲେ ନାଜାନ କି ହତୋ । —(ଅଙ୍ଗୁଠି ଦେଖି)—ଯେଃ କି ଡଟେ ରେ !—ତେଲ ଲାଗାଏ ନା ଚୁଲେ ମୋମ୍ ଦେୟ । (କାନ୍ନ କଣ୍ଠକ ଅଙ୍ଗୁଠି ନେଇ) ଇଃ ବେଟା ଘି ଲାଗିୟେ ମାଥାଖାନା କି କରେଛେ ଫେଲେଛେ ! ବେଟାର ଅବାର କି ବୈଷ୍ଣବ—ବେଟ ଦେର ବୁଦ୍ଧି ଓ ଏମନ ଗୋଁଡ଼ା—ମଦେର ବୋତଲ ଛୁଁଲେ ଜାତ ଯାବେ—ସେତ ଏଖନ୍ ଗଙ୍ଗାର ଜଲେର ଚେୟେ ବେଶି—କି ଗଙ୍ଗାଧର ବାବୁ ?

ଗଙ୍ଗା ।—( ଦୀର୍ଘଶ୍ୱାସ ହୋଇ ) ତେବେ ପାଳିଏ ଗେଲ ! ଉଡ଼େ ଗଉଡ଼ଦେର କଥା ଜାଣନା—ଗୋସେଁଇକେ ଲୁକିୟେ ମାଛ ମାଂଉସ ଖାୟେ ହବେ ଆର ଚଢାକାଟିୟେ ବୈଷ୍ଣବ ହୋଇ ବୁଲବେ ।

ବଂଶୀ ।—ହେଁ ଭାଇ ଆମାୟ ବଲ୍‌ତେ ହବେ—ଏଖନ୍ ହଚ୍ଛେ କି ?

ଗଙ୍ଗା ।—କି କର୍‌ତେ ହବ କହ ?

ବଂଶୀ । ଆର କି କରବେ ହବେ—ଓ ବାକ୍‌ସଟା ଫେଲେଦେ—

ତୁଇ ଛୁଟା ନଯେ୍ୟ ଯା—ଆସ୍ଚି ଛୁଟା ହେଡ଼େ ଆର ବାଡ଼ ହେଯେ୍ୟ ଜଲ ଖେଯେ୍ୟ ନିଯେ୍ୟ ଆଛି ।

ଗଙ୍ଗା ।—ଆମି ଅଜୁର ନବ କେମ୍‌ନେ ?

ବଂଶୀ ।—ଖାବ କେମ୍‌ନେ ?

ଗଙ୍ଗା ।—ନୁବଯେ୍ୟ ଖାଇବ ନା ।

ବଂଶୀ ।—ତୁଇ ଯେ ଅବାଜ ଓବେଟା ଚାଧର ମତ ହଲି ଯେ ଦେଖ୍‌ଚ—ନଯେ୍ୟଯାନା ଗୃହଭେର ନଚେ ନୁକବେ ।

ଗଙ୍ଗା ।—( ପାଞ୍ଚୋଟି ବୋତଲ କାଖରେ ଯାକ ) ଅଜୁତ ହଚେ —ନାହିଁ—ତୁମେ ସାତୁଟା ନଯେ୍ୟଯାଁ ।

ବଂଶୀ ।—ହୋକ୍—ଯାକ୍‌ଗେ—( ସାତଗୋଟି ବୋତଲ ନେଇ ) —ଅରେ ଏ ବ୍ରାଣ୍ଡିର ବୋତଲ୍ ନଯ୍—ଅମୋଦେର ଜାହାଜ ।—ତୁଇ ଆଗେ ଯା ଆମି ଏଇ ଚଲ୍‌ଲୁମ୍ ବଲେ ।

[ ଉଭୟଙ୍କର ପ୍ରସ୍ଥାନ ।

ପଟକ୍ଷେପଣ ।

---

ଦ୍ୱିତୀୟ ଦୃଶ୍ୟ—ବୈଠକଖାନା ।

[ ତକ୍‌ୟା ଲଗାଇ ବୈଷ୍ଣବଚରଣ ଦାସ ଏକାକୀ ଉପବିଷ୍ଟ ଓ ନିକଟେ ବୈଠକ ଉପରେ ଗୁଡ଼ାଖୁ ସଜା ହୋଇ ହୋକ୍କା ଚଲମ ସ୍ଥାପିତ । ]

ବୈଷ୍ଣବ ।—( ଦକ୍ଷିଣହସ୍ତରେ ମାଳା ଝୋଲି ହଲାଉଁ ସ୍ୱଗତ ) ହଦ୍ ହେଲା ଅସେ ! ଦୁଇ ଶ୍ଟଗଟା ଯଉଁଠୁ ଇଂରାଜୀ ପଢ଼ିଲେ, ଆପଣା ଧର୍ମ, ଆପଣା ଗୁରୁ କ ଆପଣାର ମାନ୍ୟଲୋକଙ୍କୁ ଅଜ୍ ଖାତର କଲେ କ—ଗୋଟିଏ ଗୋଟିଏ ଯେପରି ବଡ଼ ବଡ଼ ଶେଠ କ ନବାବ ହୋଇଗଲେ ।

କାହାକୁ କହିବା ! ମାନ ଜଗିବା କି ନାଗା ହେବା। ତେଣିକି ଆଉ ଗାଧୋଇ ସାଧୁ ଗୋଟାଏ ନିର୍ମାଲ୍ୟ ପାଇବା ତ ଦୁଷ୍କର ହେଲା, ଏଥିରେ ଆଉ କୁଳଧର୍ମ ରଖିବେ କିଏ ? ( ହୋକ୍କା ନେଇ ଟିକିଏ ଧୂମ୍ରପାନ ) କଶା ତ ଗଲା ସେ ଦୁନିଆ ବେଗାର ହେଲାଣି, ଯାହାକୁ ଆଉ କି କହିବା ! ମାଧୁଆତ କେବେ ମିଛ କହିବାର ମୌନ ନୁହେ— ହରେକୃଷ୍ଣ ! ଏସବୁ ଦେଖି ସାରଣକୁଳରେ ଜନ୍ମ ହୋଇ ଧିରଦେଉ ଚାଳ, କାହାକୁ କହିବା ! ପୁଣି ସେହିକ ଗୋଟାଏ କୁଳାଙ୍ଗାରକୁ ଦେଖିଲି ଯେ କଣ କହିବ ! ଦରମା ପ୍ରାଏ ଖୋଜିଏ, ସେଥିରେ ନାଳ ସଞ୍ଜବେଳେ ଆଠଣାଟିଏ — ରାଧେକୃଷ୍ଣ ! ମଦ, ପାଉଁଶେଟି ଦହିକହି— ରାଧେକୃଷ୍ଣ !— ତା ବାଦ ଭସବଟିଏ ଯେ ତାଙ୍କର ଦରମା ଦଶଟଙ୍କା— ହରେକୃଷ୍ଣ !—( ପୁଣି ଧୂମ୍ରପାନ )— ଆମ ପୁଅକୁ ଆଉ କ ବୋଲିବା—

ନେପଥ୍ୟ ।—ଜୟ ରାଧେ, ରାଧେକୃଷ୍ଣ !

ବୈଷ୍ଣବ ।—( ଚକିତେ ) କିଏ—ବାବାଜି ମହାପ୍ରଭୁ !—ଅସିବା ହେଉନ୍ତୁ ( ଉତ୍ଥାନ ଓ ପ୍ରଣାମ । )

[ ଅଦ୍ଭୁତାଗମ ବାବାଜୀର ପ୍ରବେଶ ।

ଅଦ୍ଭୁ ।—(ଦୁଇହସ୍ତ ହଲାଇ) ଜୟ ରହେ ।—ସବୁ ଅଛିତ ?— ( ପାର୍ଶ୍ୱେ ଉପବେଶନ । )

ବୈଷ୍ଣବ ।—( ଉପବେଶନାନ୍ତେ ) ଅପଣଙ୍କ ଅଶୀର୍ବାଦରୁ ସମସ୍ତ କୁଶଳ । ଦାସ ଘରେ ଯେ ଚରଣଧୂଳି ପଡ଼ୁଛି ଦାସଙ୍କ ଖଡ ପଚ ଲୁଣ୍ଠେ ହୋଇଯାଉଛି ।

ଅଦ୍ଭୁ ।—ଭଲ ଭଲ । ( ଚତୁର୍ଦ୍ଦିଗ ନିରୀକ୍ଷଣ କରି ) ଅଜତ ଘର ଅଚ୍ଛା ସଫା ଦିଶୁଛି । ଏ ଛବସବୁ କେଉଁଠୁ ଅଣିଲ ?

ବୈଷ୍ଣ । — କୃଷ୍ଣଚରଣଙ୍କୁ ଜାଣନ୍ତି ନାହିଁ — ମଇଲା ହୋଇ ଟିକଏ ତା ଆଖିରେ ପାଏ ନାହିଁ । ଅଠଦଳକୁ ଅଠଦଳ ଘର ସ୍ପର୍ଶ ହେଉଛି । ହ୍ଲାଦିତ ହୋଇ ଅଙ୍ଗ ଜଳ ଦଧି ସଉଳରୁ ବଜାରରୁ ଏ ଛବଗୁଣ୍ଡିଏ ଅଣି ଟାଙ୍ଗି ଦେଇଛି । ବାବାଜି ମହାପ୍ରଭୁ । ତାର ପସନ୍ଦଟା ଭଲ । ଦେଖ ଦେଖନ୍ତୁ ଅର୍ଜୁନ ଦ୍ରୌପଦୀସ୍ୱୟମ୍ବରରେ ଲକ୍ଷ ବିନ୍ଧୁଛନ୍ତି; ଦେଖ ଦେଖନ୍ତୁ ଶ୍ରୀକୃଷ୍ଣଙ୍କୁ ଅକ୍ରୂର ରଥରେ ନେଇ ଯାଉଛି ଆଉ ଗୋପୀମାନେ ଉପରକୁ ମୁହଁ ଟେକି ଡକା ପାରୁଛନ୍ତି, ଦେଖ ଦେଖନ୍ତୁ ରାମ-ରାବଣଙ୍କର ଘୋର ଯୁଦ୍ଧ ହେଉଛି; ଦେଖ ଦେଖନ୍ତୁ ସୀତାଠାକୁରାଣୀଙ୍କ ପରୀକ୍ଷା ସକାଶେ ଅଗ୍ନିକୁଣ୍ଡ ସଜଡ଼ା ହେଉଛି —

ଅତ୍ମା । — କୃଷ୍ଣଚରଣର ଧର୍ମରେ ମନ ଅଛି ।

ବୈଷ୍ଣ । — ସେସବୁ ଭଲ — ଖାଲି ସେହି କଥାଟି ।

ଅତ୍ମା । — ତା ଅନ୍ ନ କହିବା ହେଉଛନ୍ତି — ତା ତ ସଂସାର ଭ୍ରଷ୍ଟ କଲାଣି । ମାତ୍ର ମୁ ଦେଖୁଛି ତୁମ୍ଭର କୃଷ୍ଣଚରଣର ଯେପରୁ ପସନ୍ଦ ତା ମନ ଶୀଘ୍ର ବଦଳିଯିବ ।

ବୈଷ୍ଣବ । — ହଁ ଦୀନବନ୍ଧୁ ଯେବେ ଦୟା କରିବେ — ରାଧେକୃଷ୍ଣ !

ଅତ୍ମା — ଦୀନବନ୍ଧୁଙ୍କର ଦୟା ? ଅହା ! ସେ ଦୟାମୟ କରୁଣା-ସାଗର ଈଶ୍ୱରଙ୍କ କୃପାରୁ ଏଡ଼େ ସଂସାର ଚଳୁଛି — ଜଣେ ବାଳକ ପ୍ରତି ଅନୁଗ୍ରହ କରିବା ଭାର ! (ଗୀତ)

ରାଗିଣୀ ଝିଁଝିଁଟ — ତାଳ ଠୁଂରୁ ।

କର ସଦା ମନ ଶ୍ରୀହରି ସ୍ମରଣ
ଭକ୍ତିପାଶେ ବନ୍ଧ ଥାଇଁ ରେ । ପଦ ।
କ୍ଷଣିକ ଏ ଜୀବନ, କ୍ଷଣକେ ବିନାଶନ,
ଭାବିବ କେତେ ମାୟା ନାହିଁ ରେ ।

ଯେବେ ରେ ଏ ଜୀବ, ଭବ ଛାଡୁଥିବ,
ଭୁଞ୍ଜ କରବ ସବୁଠାଇଁରେ । ୧ ।
ଛାଡ ପରିଜନ, ସଂସାରବନ୍ଧନ,
ଭୁଲିଅଛୁ ମନ ଭାଇ ରେଁ ।
କେଣେ ଯିବ ସବ, କିଛି ନ ରହିବ,
ଭଗବାନେ ଏକା ଜାହ୍ନ ରେ । ୨ ।
ଅହଲ୍ୟା, ଦ୍ରୌପଦୀ, ପ୍ରହଲ୍ଲାଦ ଆଦି,
ସେହି ନାମେ ମୋକ୍ଷ ପାଇଲେ ।
ଜୀବନ-ତାଙ୍କୁ ମନ, ଧାନ-ଉଚ୍ଚାରଣ
ତାଙ୍କୁ ବଳ କେହି ନାହିଁ ରେ । ୩ ।

ବୈଷ୍ଣ । — ଆହା କି ସୁନ୍ଦର ଭଜନ ! — କେଡ଼େ କୋମଳ ଭାବ ! ମହାରାଜ ! ଆପଣଙ୍କର କଣ୍ଠ ଅତି ପରିଷ୍କାର, ଆହା ! ଗୋଟିଏ ଭଜନରେ ଅଧୀନର ଗୃହ ପବିତ୍ର ହୋଇଗଲା ।

ଅତ୍ମା । — ନାରାୟଣ ପରଂବ୍ରହ୍ମ । ତାଙ୍କ ନାମ ଘେନଲେ ଚରଚର ବିଶୁଦ୍ଧ ହୁଏ — ପାତକୀ ଏକା ନାମ ଘେନ ସ୍ୱର୍ଗପୁର ଦର୍ଶନ କରେ । ସେ ଶାନ୍ତନୁଙ୍କର ଦୟାସାଗରଙ୍କର ସ୍ତୁତିବାଦ କି ଅମ୍ଭେମାନେ କର ପାରୁଁ ? ଈଶ୍ୱର କରନ୍ତୁ ପ୍ରଭୁଙ୍କଠାରେ ତୁମ୍ଭର ମନ ଥାଉ ଆଉ ସଦାକାଳ ଖୁସିରେ କଟାଇ ମରଣ ସମୟକୁ ତାଙ୍କର ନାମ ଘେନ ତରିଯାଅ ଏହି ବାଞ୍ଛା ।

ବୈଷ୍ଣବ । — ଏହି ଆଶୀର୍ବାଦ କରନ୍ତୁ ।

[ କୃଷ୍ଣଚରଣର ପ୍ରବେଶ ।

କୃଷ୍ଣ । — ବାବାଜୀ ମହାରାଜ ! ଦଣ୍ଡବତ — ( ସାଷ୍ଟାଙ୍ଗ ପ୍ରଣିପାତ ଓ ଉପବେଶନ ) ।

ଅତ୍ମା । — ଜୟ ରହେ ବାବା ! ଠାକୁର ତୁମ୍ଭକୁ ସୁବୁଦ୍ଧି ଦେଉନ୍ତୁ ! — ଆଉ କୃଷ୍ଣଙ୍କ କଥା ଯେ କହୁଥିଲ ଦେଖିଲତ କିପରି ଗୁରୁ-ବୈଷ୍ଣବଙ୍କ ପ୍ରତି ଭକ୍ତି ।

ବୈଷ୍ଣ ।—ଅହା ! ମୋ କୃଷ୍ଣ ପରି କ ଆଉ ହଏ ଏଡ଼େ ଥଣ୍ଡା—
ଏତେ ବୁଦ୍ଧିଜୀବୀ ହେବ ? ଦେଖୁନାହାନ୍ତି ସେ ପଦେ କଥାହୋଇ
କାହାରକୁ ନ କହେ—ସବୁବେଳେ ତୁନିତାନି ହୋଇ
ଆପଣା କାମ କରି ଚାଲିଯାଉଥାଏ । ତାହାର ଗୁରୁବୈଷ୍ଣବଙ୍କ
ପ୍ରତି ଭକ୍ତି ଚତୁର୍ଗୁଣ ।

ଅନ୍ନା ।—ଈଶ୍ୱର ଚିରଜୀବୀ କରନ୍ତୁ ! ବ୍ରାହ୍ମଣ ବୈଷ୍ଣବ ଆଉ ଗୁରୁ-
ଜନମାନଙ୍କ ପ୍ରତି ଏହିପରି ଭକ୍ତି ଥାଉ ! ଯେ ଦୋଷ କଥା
କହୁଥିଲ ତାହା ଶୀଘ୍ର ଭଲ ହୋଇଯିବ—ମୋ ଆଶୀର୍ବାଦରୁ
—କୁଆଡ଼େ ଉଡ଼ିଯିବ ।

ବୈଷ୍ଣ ।—ଏହି ଆଶୀର୍ବାଦ କରନ୍ତୁ—ଆରେ କୃଷ୍ଣ ! ତୁ ଯେ ଖର୍ଚ୍ଚବର୍ଚ୍ଚ
କରୁ ତାର କିଛି ହିସାବ ରଖୁଛିକି ?

କୃଷ୍ଣ ।—ସବୁ ତ ଆମ୍ଭର ଖର୍ଚ୍ଚ—ହାତରେ କରୁଛି, ହିସାବ ଆଉ କ
ରଖିବା । ଭଲ ହେଲେ ଆମ୍ଭର ଖର୍ଚ୍ଚ, ମନ୍ଦ ହେଲେ ଆମ୍ଭର
ଖର୍ଚ୍ଚ ।

ବୈଷ୍ଣ ।—ତା ହେଉ, ତେବେ ହିସାବଟାଏ ଥିଲେ ଭଲ । ମୁଁ ତ
ଦେଖୁଛି ତୁ ଯେଉଁଭଳି ଖର୍ଚ୍ଚବର୍ଚ୍ଚରେ ଚଳୁଛୁ—ତୋର ତ
ଦରମାହା ଚାଳିଶ ଟଙ୍କା—ଏତେ ଟଙ୍କା ଆଣୁ କେଉଁଠୁ ?

କୃଷ୍ଣ ।—ନାହିଁ, ଅମ୍ଭ ଇଲାକାରେ ଯେତେ ମଣିଷଙ୍କର କାମ—କଏ
ଦଶ କଏ ପାଞ୍ଚ କାମଟାଏ ପଡ଼ିଲା ବେଳେ ଦେଇଯାନ୍ତି ।

ବୈଷ୍ଣ ।—ଦେଖ୍ ଅଜକାଲି କାଳ ଓଲଟା ଟି—ସମସ୍ତଙ୍କୁ ମିଳେଇ-
ମିଶେଇ କାମ କରୁଥିବୁ ।

ଅନ୍ନା ।—କୃଷ୍ଣକୁ ସେ କଥା ଶିଖାଇଦେବାକୁ ହେବ ନାହିଁ—ପିଲା
ହେଲେ କଣ ହେଲା ତାର ବୁଦ୍ଧି ଭାରି ।

ବୈଷ୍ଣ ।—ହଁ ତା ସବୁ ଦେଖାଯାଉଛି ।—ଭଲା ତୁ ଏତେ ଖର୍ଚ୍ଚବର୍ଚ୍ଚ
କରୁଛୁ ମୁଁ ଗୋଟିଏ କଥା କହିବ ମାନିବୁ କି ?

କୃଷ୍ଣ ।— ଆପଣଙ୍କ କଥା ମାନିବ ନାହିଁ ?

ଅମ୍ବା ।— ଆଉ କଣ ?— କେଡ଼େ ବୁଦ୍ଧି ।— ବ୍ୟଧେବୁଷ !

ବୈଷ୍ଣ ।— ବାବାଜୀ ମହାରାଜଙ୍କର ଅନେକ ଦିନୁଁ ଅଭିଳାଷ ଅଛି— ଗୋଟିଏ ହରିହାଟ କରିବେ—ଯେତେ ବୈଷ୍ଣବମଣ୍ଡଳୀ ଅଛନ୍ତି ସମସ୍ତେ ନିମନ୍ତ୍ରିତ ହୋଇ ଆସିବେ—ତୁ କିଛୁ ଦେଇ ପାରିବୁ ?

କୃଷ୍ଣ ।— ମୋଠିତ ଏହିକ୍ଷଣି ଟଙ୍କା ନାହିଁ—ପଚିଶ ଟଙ୍କା ଭିତରେ ହୋଇ ପାରିବ ?

ବୈଷ୍ଣ ।— ହେଉ—ହେଉ ଦେବ ।

ଅମ୍ବା ।— କିସନ୍‌କା କୁଶଲମେ ରହେଁ— ବାବା ଖୁବ ନାମ କରେଗା !

କୃଷ୍ଣ ।— ( ପକେଟରେ ହାତ ପୂରାଇ ) କାଲି ଦେବା ।

ବୈଷ୍ଣ ।— ବାବାଜୀ ମହାରାଜ ! ଚାଲନ୍ତୁ ଆପଣଙ୍କର ଆଉ କ'ଣ ଉଦ୍‌ଯୋଗ କରିବାକୁ ହେବ ଦେଖିବା ( ଉତ୍ଥାନ ) ।

ଅମ୍ବା ।— ( ଉଠି କୃଷ୍ଣର ମସ୍ତକରେ ହାତ ବୁଲାଇ ) ଜମ୍ବୁ ରହେ— ଖୁସି ରହେ ।

[ ବୈଷ୍ଣବ ଓ ଅମ୍ବାଦାସର ପ୍ରସ୍ଥାନ ।

କୃଷ୍ଣ ।— ( ପିତାଙ୍କସ୍ଥାନରେ ତକିଆକୁ ଆଉଜି ବସି ) ଗଲା, ପାପ ଗଲା ! ( ହାଇ ମାରିବା ) ଓଃ ବେଳ ଯେ ଉଚ୍ଛୁର ହେଉଛି ! ( ପୁନଃ ହାଇ ) ହାଇତ ଉଠିଲାଣି ( ପୁଣି ଗୁଡ଼ ପାଞ୍ଚ ହାଇ ଓ ନାକ ସୁଁ ସୁଁ କରି ) ଓଃ ନାକ ଆଖିବି ବନ୍ଦ ହୋଇ ଆସିଲାଣି । ଅନାଦ !—ଅନାଦ !—

ନେପଥ୍ୟ ।— ଅବଧାନ !

[ ଅନାଦର ପ୍ରବେଶ ।

କୃଷ୍ଣ ।— ମୋ ତକିଆଟା ଆଉ ପାଖେ ଟିକିଏ ଆଣତ ।

[ ଅନାଦର ପ୍ରସ୍ଥାନ ।

ଛଅଟା ତ ବାଜିଗଲାଣି ଆଉ ଦୁଇଘଣ୍ଟା—ଘଣ୍ଟା ଏ ଗଲେ ଆମ୍ଭେ ଖୁଲିଯିବା ।

[ ତବଖ ଓ ଜଳପାତ୍ରହସ୍ତେ ଅନାଦିର ପ୍ରବେଶ ।

କୃଷ୍ଣ ।—ଦେ ( ତବଖ ଘେନି ଚୈଲାଏ ଅଫିମ ବାହାର କରି ମୁଖେ ପ୍ରକ୍ଷେପଣ ଏବଂ ଜଳପାତ୍ର ନେଇ ଟିକେ ପାଣି ସହିତ ଅଫିମ କଷ୍ଟେ ଗଳାଧଃକରଣ ) ।

ଅନା ।—ସାନ୍ତେ, ମୁଁ ଅଫିମ ଖାଇ ନାହିଁ ।

କୃଷ୍ଣ ।—ଆଉ, ଅଫିମ ନ ଖାଇଲେ ଅମୃତ ଖୁନ୍ଦର—ତ ନେ—

( ଅଫିମ ଚୈଲାଏ ପ୍ରଦାନ ) ।

ଅନା ।—( କୃଷ୍ଣବଲ୍ଲ ଅଫିମ ସେବନ ) ମାଣ୍ଡିଆ ତରେ ପଲେଇଛି ।

କୃଷ୍ଣ ।—ମୁଁ ସେଇଥ ଶୁଣିଲି—ସେଉଟା ଗୁଣ୍ଡି ଟଙ୍ଗାଣ୍ଡିଅ ଯା ଭୁ ବେଗେ ଗିଲାସ ରଖି ଦେଇ ଦୋକାନ ଏ ସବୁ ବାହାର କର—ମଦତ ସଜାଡ଼ୁ ?

ଅନା ।—ହଁ—( ଗିଲାସ ଘେନି ପ୍ରସ୍ଥାନ ) ।

କୃଷ୍ଣ ।—(ସ୍ୱଗତ) ଆଜ ବୁଢ଼ା ବସିଲା ସ୍ଥାନକୁ ମଦତ ଖାଇ ପବନ କରି ଦେବା ।

[ ଅନାଦିର ପ୍ରବେଶ ।

ଅନା ।—ହୁସେନ କାବୁଲୀ ଅସିଛି ।

କୃଷ୍ଣ ।—ଡାକ । —ଆଓ୍ଚ ହୁସେନ ସାହେବ ।

[ କାବୁଲର ବୋଝଗ୍ର ସହିତ ପ୍ରବେଶ ।

କାବୁ ।—ସଲାମ !

କୃଷ୍ଣ ।—ଆଓ ଆଓ, ସଲାମ ! କୁଛ୍ ଲାଏହୋ ନା ଖାଲି ?

କାବୁ ।—ହାଁ ହେ କୁଛ୍—କସ୍‌ମିସ୍, ବେଦାନା, ପେସ୍ତା, ବାଦାମ !

କୃଷ୍ଣ ।—ଦୋ, ଲାଯ୍ହୋ ତ ସବ୍‌ସେ ଥୋଡ଼ା ଥୋଡ଼ା ଦେ ଯାଓ ।

କାବୁ ।—ପିଚ୍ଛେକା ରୁପିଆ ମିଲା ନେହିଁ ।

କୃଷ୍ଣ ।—କେତା ହେ ?

କାବୁ ।—ଓ ନୁଥା ସାଠ ରୁପି ପାଞ୍ଚ ଅନା ।

କୃଷ୍ଣ ।—ହୋଏ—ଭୁନ୍ ଦୋ ନା—ସବ୍‌ସେ ଏକ ଏକ ମେର ଦେ ଯାଓ ଯୋ ଦାମ ହୋଗା ଜଲ ସାମନ୍ତୁ ଅପ୍‌କେ ଲେ ଯାଓ—ଯା ଅଜାଦ୍ଧ ବୁଝି ନେ ।

କାବୁ ।—କେଉଁକା ଦଫେ କଲ୍ ସାମ୍ କଲ ସାମ୍ ବୋଲ୍‌ତା ହେ ଲେକନ୍ ଦେତାତୋ ନେହିଁ ।—ଅଚ୍ଛା ହାମ୍ ଦେ ଯାତା ।

[ ଅଜାଦ୍ଧ ଓ କାବୁଲର ପ୍ରସ୍ଥାନ ।

କୃଷ୍ଣ ।—( ଭଡମୋଡ ହୋଇ ) ଦେଖଟା ଟିକଏ ଜସମିଅ କାହିଁକି ହୋଇଛି—ଶଇମ ଏଡଲେ କାଲିକ ଛାଜା ହୋଇଯିବ ।

[ ଅବଦୁଲ୍ଲା, ବୋକଶ୍ମସ୍ତକେ ଜଣେ ମାରୁଆଡ ଓ ଗଛ ମେକଗ୍ଭ ସହିତ ଏକ ଦର୍ଜୀର ପ୍ରବେଶ ।

କେଉଁ ଅବଦୁଲ୍ଲା ! କୋଟିସ ଫିଗଦ୍ଧ୍ୟା ?

ଅବ ।—ଜି ହଜୁର ! ଲକଯ୍ୟେ ( ଲଫାଫା ପ୍ରଦାନ ) ।

ମାରୁଆଡ ।—ରାମ୍‌ରାମ୍ ବାବୁଜ !

କୃଷ୍ଣ ।—(ଲଫାଫା ନେଇ ପାର୍ଶ୍ୱେ ରଖିଦେଇ) ରାମ୍‌ରାମ୍ ! କାହାଁ ଥେ ଭୁମ୍ ?—ଅବଦୁଲ୍ଲା ଯାକେ ବୋଲଦେକା ବାଦ୍ ଅଯ୍ୟେ !

ମାରୁ ।—କାହାଁ ବାବୁ ଦାମ୍‌ତ ପାଯ୍ୟାନେହିଁ । ପିଛଲା ସନ୍ତାଇଶ ରୁପିୟା ଛାଇଅଣା ଓ ହାଲ୍‌କୁ ଛତାଲଶ ରୁପିୟା ପନ୍ଦର ଅଣା ଯେ ଏକାତ୍ତର ରୁପିୟା ସାଢ଼େ ଏଢ ଅଣା ଅଓର ମାର୍କିନ୍ ଏକଜନ ପୌଣେ ଛନ୍‌ଅଣା ।

କୃଷ୍ଣ ।—ହୋଏଗା—ମହାଜନକା ଦେଖ ବାହାଁ ରହ୍‌ତାହେ ।—ଅବଦୁଲ୍ଲା ! ଓ ଦର୍ଜୀ ଅୟା ?

ଦର୍ଜୀ ।—ଅବଧାନ ! ମୁ ଢ ଜରରେ ଉଠି ବସି ପାରୁ ନାହିଁ—ହଜୁରଙ୍କର ନାମ ଶୁଣି ଗ୍ଭଲି ଅଇଛୁ ।

କୃଷ୍ଣ ।—ଅରେ ! ଏ ମାରୁଅଡଠୁଁ ବନାତର ପତଲୁନ, ସାହେବୀ କୋଟ ଅଉ ୱେଷ୍ଟକୋଟ ପାଇଁ ଲୁଗା ନେ । ଅଉ ସବ୍‌ଜାଇଙ୍କର ଅଲପକ୍କା ନେ ସେ ଟୋପିବାଲା ମାଗୁଥିଲା ସାହେବୀ ଟୋପି ଉପରେ ପଡିବ ଅଉ ଗୋଟାଏ ଗୃଇନା-କୋଟ ହେବ ।

ଦର୍ଜି ।—ବହୁତ ଅଚ୍ଛା । ( ସ୍ୱଗତ ) ଭଲଯୋଗ ହୋଇଛି—ଦାମ ତ ଏଠି ଯା ମିଳିବ—ଗଜ ଗୃତ ପାଖିଲୁଗା ହେଲେ ମିଳିଯିବ ।

ମାରୁ ।—ବାବୁ, ରୁପେୟା ?

କୃଷ୍ଣ ।—ଓଃ ! କଲ୍ ସନ୍ଧ୍ୟାକୁ ସବ୍ ଲେଗେ ।

ମାରୁ ।—ଅଜ୍ କୁଛ୍ ହୁକୁମ୍ ହୁଅ ନେହିଁ ?

ଅବ ।—ଫେର ଝୁଟ୍‌ମୁଟ୍ ଖାଟେ ଲଗାଏ ହୋ—ହୁକୁମ ତ ହୋ ଗିୟା—ଅଜ୍ କ କଲ୍—ଇସ୍‌ମେଁ ଓଜର ?

କୃଷ୍ଣ ।—ଉନ୍‌କା ଦସ୍ତୁର ଓହି ରକମ୍—ତୁମ୍ ଯାଓ ଅବଦୁଲ୍ଲା ଦେଖ୍‌କେ କପ୍‌ଡ଼ା ଲେଲୋ ।

ଅବ ।—ବାବୁ ମିଜେ ଏକ୍‌ଠୋ କୁର୍ତ୍ତି ହୁକୁମ୍ ହୁଅଥା !

କୃଷ୍ଣ ।—ଅଚ୍ଛା ଉସ୍‌ସେ କପଡ଼ା ଲେଲୋ ।

ଅବ ।—ବହୁତ ଖୁବ୍—ଚଲୋ ।

[ ଅବଦୁଲ୍ଲା, ମାରୁଅଡ ଓ ଦର୍ଜୀର ପ୍ରସ୍ଥାନ ।

କୃଷ୍ଣ ।—ଅନାଦଟା କୁଆଡ଼େ ଗଲା ।—

[ ଗଙ୍ଗାଧରର ପ୍ରବେଶ ।

ଅରେ ବାଃ ଅ ଅ ଗଙ୍ଗାଧର ! ଖବର କଣ ?

ଗଙ୍ଗା ।—ବାଣ୍ଡସାହେବ ଭଲ ଅଛନ୍ତି—କହୁଛନ୍ତି ଜଲ୍ଦ ଯିବାକୁ ।

କୃଷ୍ଣ ।—ହେଇ ଗୃଇଲି—କି ଖାଦ୍ୟା ଦେଇ ଥଇଲୁ ?

ଗଙ୍ଗା ।—ହଁ ଦେଖିକରି ଭାରି ଖୁସ୍ । ବାବୁ ବଡ଼ ଭଲଲୋକ— ଆଉ ଦାମ୍ଭିକଂପରି ନୁହେଁ । ସେ କହନ୍ତି ତାର ଦାମ ସାଠିଏ ଟଙ୍କା ଦେବ ।

କୃଷ୍ଣ ।—ଆଉ କଣ, ସଚାନରେ ବନାରସୀ—କଣ ଅଳପ ହୋଇ ଛିକି !—ଗଙ୍ଗାଧର ! ଆଉ ତା ପର ଗୋଟିଏ ମାଇକିନିଆ ହେବ କି—ସେ ରମଣୀଶିରୋମଣି ।—ଛୁଟୀଏ ମଦର ପିଇବୁ ? —ଅନାଦ !—ଅନାଦ !—

ନେପଥ୍ୟେ ।—ଅବଧାନ !

[ ଅନାଦର ପ୍ରବେଶ ।

କୃଷ୍ଣ । ଅଣନା ଜଲ୍‌ଦି । ଦଟା ହୋଲ୍ଲା ଗାଉ ବେଶି ନାହିଁ ଗୋଟା ଅଠ ଦଶ ଗୋଲ୍ ଧେଉଆ—ଆଉ ସେ ଛେନା ମୁଡୁକି ଓ ରାବଡ଼ି ଆଣିବୁ ଶୀଘ୍ର ଦେବ ।

[ ଅନାଦର ପ୍ରସ୍ଥାନ ।

ଗଙ୍ଗା ।—ବଂଶୀ ବାବୁର ସେହି କଥା ।

କୃଷ୍ଣ ।—କଣ—ଗୁଜରାଟି ?

ଗଙ୍ଗା ।—ହଁ—ସେହିଟା ମଦ ପିଇ ପିଇ ଦିନେ ମରିଯିବ ।

କୃଷ୍ଣ ।—ଥାଳଆଏ ଗୁଜରାଟି ପଠାଇ ଦେଇଛୁ—ଆଉ ବସିମିସ୍, ପେସ୍ତା, ବେଦାମ ଏ ସବୁ ଯୋଗାଡ଼ କରଛୁ—

ଗଙ୍ଗା ।—ତେବେତ ଖୋଲ ବନ୍ଧା ମଉଜ ହେବ ।

କୃଷ୍ଣ ।—ହେବ ଯେବେ ଆଉ ହୋଇ ହେବ ନା—ଅଧ୍ୟାପନ୍ତରଆଟା ହେଲେ ବାବୁ ମନେ କରିବେ କଣ ?

ଗଙ୍ଗା ।—ଭାଇ ମୋର ଦରମା ଟଙ୍କା ପଚାଶ ବାକି ଅଛୁ । ବାବୁର ମୁଁ ଯେତେ କାମ କରୁଛି—ଆଉ କେହି କରିବ ନା ?

କୃଷ୍ଣ ।—ଦଟଙ୍କା ପାଇଛୁ ପରା—ବାକି ଅଠଟଙ୍କା ?

ଗଙ୍ଗା ।—ହଁ ।

କୃଷ୍ଣ ।—ଦେଉ କାଲ ନେବୁ ।

( ଅନାଦର ଢୋଲ୍କା, ନଳ, ବେଂଠଙ୍ଗି, ଶୀକା ଓ
ଗୃହ ସହିତ ପ୍ରବେଶ ଓ ସେସବୁ ଦୃହଙ୍କ ସମ୍ମୁ-
ଖେ ଯଥାବିଧାନ ସ୍ଥାପିତ ।

ଅନା ।—( ଏକ ଲମ୍ଫଟି କାଖ ଦେଖାଇ ) ଦଅଁ ଲଗାଏ ?

କୃଷ୍ଣ ।—ହଁ ଲଗା ।—ତୁ ଖାଇବୁ ନା ?

ଅନା ।—ହଁ ମୋ ଭଣ୍ଟିଟା ଟାହିଁକ ଖସ୍ ଖସ୍ ହେଉଛି, ଛଟାଏ ଖାଇବ ।

ନେପଥ୍ୟେ ।—ଅନାଦ ! ମାଳଟା ଡେରୁଛ ।

କୃଷ୍ଣ ।—(ଶଶବ୍ୟସ୍ତେ) ଅରେ ଉଠ ଉଠ ବାପା ଆଇଲେଣି !

[ ଲଣ୍ଡଭଣ୍ଡ ହୋଇ ହୋଲ୍କାଥିବ ଯେନ
ସମସ୍ତଙ୍କର ପଳାୟନ ।

ଯବନିକା ପତନ ।

( ନେପଥ୍ୟେ ଗୀତ )

ରାଗିଣୀ କାଫି—ତାଳ ଅଡ଼ଖେମଟା ।
ପାପପାପ୍ରବାରେ ( ରେ ) ବୁଡ଼ିଲା ସଂସାର ।
ଏହିରୂପ ଲଭନାଭ ଅନୀତି ବେଭାର । ପଦ ।
ନାନାଦି ନିଶା ସେବନ, କପଟତା ଆଚରଣ,
ବ୍ୟସ୍ତ ବଳ ଉପାର୍ଜନ—ଘୋର କଳିକାଳ । ୧ ।

---

# ତୃତୀୟ ଅଭିନୟ ।

## ପ୍ରଥମଦୃଶ୍ୟ—ଉଦ୍ୟାନ ।

[ ଭଗମଞ୍ଜରୀ ଏକାକିନୀ ଏକ ପ୍ରସ୍ତରମୟ ଆସନରେ ଅଧୋବ-
ଦନରେ ଫୁଲ ଗୁନ୍ଥୁଥିବାବସ୍ଥାରେ ଉପବିଷ୍ଟା ]

ରସ ।—( ସ୍ୱଗତ ) ବିଧାତା ଯାହାକୁ ଦୁଃଖୀ କରେ ତାକୁ ଗୋଟାଏ ଦୁଃଖରେ ଯେବେ ପଡ଼ିବାକୁ ଦେଉଥାନ୍ତା ତେବେ ଆଉ ଚିନ୍ତା କ ଥିଲା— ଦୁଃଖ ଉପରେ ଦୁଃଖ ପଡ଼ି ମନ ପୋଡ଼ି ଦିଏ— ଚେତନା ବୁଡ଼ାଇ ଦିଏ—ଏକାବେଳକେ ସାର ଦିଏ ! ଅହା ! ସୁଖୀ ଯେଉଁମାନେ ତାଙ୍କର ଭାଗ୍ୟ । ଦୁଃଖୀ ଯେଉଁମାନେ ତାଙ୍କୁ ସୁଖ ସ୍ୱପନପର । ଯାହାର କପାଳରେ ଥାଏ ଅନେକଜନ ଉତ୍ତାରୁ ଆପଣା ମଣିଷର ମୁହଁ ଦେଖେ— ଆଉ ଯାର କପାଳରେ ନାହିଁ ତାର ଯେଉଁ ଦୁଃଖକୁ ସେହି ଦୁଃଖ ! ଯେ ଚିରଦୁଃଖୀ ତାହାକୁ ଚିରକାଳ ଦୁଃଖ ସହିବାକୁ ପଡ଼ିବ । ନାରୀ ଅବଳା—ସ୍ୱାମୀ ବିନା ତାର ଗତି ନାହିଁ । ସ୍ୱାମୀ ଯେତେବେଳେ ପ୍ରେମଭାବରେ ଆଦର କରି ଭାର୍ଯ୍ୟା ମୁଖେ ଚୁମ୍ବ ଦେବେ ଭାର୍ଯ୍ୟା ପ୍ରେମଆହ୍ଲାଦମଗନରେ ମିଶେଇ ପଡ଼ି ତାହା ଉପଭୋଗ କରିବ; ଯେତେବେଳେ ସ୍ୱାମୀ କ୍ରୋଧରେ ଗୋଇଠା ମାରି ଭାର୍ଯ୍ୟାକୁ ଫିଙ୍ଗି ଦେବେ ତାହା ବି ଭାର୍ଯ୍ୟାକୁ ନୀରବରେ ସହିବାକୁ ପଡ଼ିବ !—ଆଉ ଉପାୟ କଅଣ ?—ସ୍ୱାମୀ ଦେବତା, ସ୍ୱାମୀ ଗୁରୁ, ସ୍ୱାମୀ ସର୍ବସ୍ୱ । ଯେଉଁ ନାରୀ ସୁଭାଗିନୀ ସେ ମନୋମତ ସ୍ନେହମୟ ସ୍ୱାମୀ ପାଇଛି—ଇହଲୋକରେ ସେହି ଧନ୍ୟା ! ଗୁଣମୟୀ ନିର୍ଦ୍ଦୋଷୀ ଭାର୍ଯ୍ୟା ପ୍ରତି ଯେଉଁ ସ୍ୱାମୀ ଅକାରଣ ଅତ୍ୟାଚାର କରେ ତାର ମନ କପଟ !—( ପ୍ରକାଶ୍ୟେ ) ମୁଁ କି ଏଡ଼େ ଅଭାଗିନୀ !—ବିଧାତା କାହିଁକି ଏଡ଼େ ଅଭାଗିନୀ କରି ମୋତେ ଜନ୍ମ ଦେଲେ ! ( ଅଞ୍ଚଳେ ଲୋତକ ମୋଚନ ) ।

[ ହରଦାସୀ ବୈଷ୍ଣବୀର ନୀରବେ ପଶ୍ଚାଭାଗରୁ ପ୍ରବେଶ ।

ହାୟ ! ଆଉ କେତେ କଷ୍ଟ ସହିବ ! ଯେ ମୋତେ ଭଲ ନ ପାଏ ତାହାପାଇଁ ମୁଁ ଯେତେ ପାଣି ହେଉଛି ଯେବେ

ତେତେକ କେହି ନ ଜାଣିଲେ—ଧିକ ଏ ଜୀବନ !—ପୃଥିବୀ ଦୁରଖଣ୍ଡ ହେଇଯା ମୁଁ ତହିଁରେ ପଶି ବିକଳଜୀବନ ବିସର୍ଜନ କରେଁ— ( ଦୀର୍ଘ ନିଶ୍ୱାସ ) ମା ଲୋ !

ହର ।—(ସମ୍ମୁଖକୁ ଆସି) ବୋହୂ ! ତୁମେକ ସବୁବେଳେ ଏହିପରି ଦୁଃଖ କରୁଥିବ । ଏହିପରି ଝୁରି ଝୁରି ଯେ ଜୀବନଟା ଯିବ ହେଇ ଝାଉଁଛି ତା କିଛି ବୁଝିପାରୁଛ ?

ରସ ।—( ହସ୍ତେ ଅପ୍ରତିଭଭାବେ ଉଠି ଲୁହ ପୋଛି ଧୀରେ୨ ) କି ମାତା କି ?—କେତେବେଳୁଁ ଆସି ଛିଡ଼ା ହେଇଛ ?—( ମୁହଁ ପୋଛି ) ମୁଁ କଣ କହୁଥିଲି !

ହର ।—ବୋହୂ ! ଡର ନା —ମୁଁ କଣ ଆଉ ନୂଆ ହେଲି କି ? ତୁମର ଦୁଃଖମାନ ମୋ ବେକରେ ପଡ଼ି ବେକ ନଇଁ ଗଲାଣି—କେତେକାଳ ଏହିପରି ଚିନ୍ତା କରୁଥିବ ?—ବସ ଦେଖିବା ତୁମେ କପାଳ ହାର ଗୁନ୍ଥିଛ । ( ନିକଟବର୍ତ୍ତୀ ପ୍ରସ୍ତରରେ ଉପବେଶନ । )

ରସ ।—[ ବସି ] ମୋ ମୁଣ୍ଡଁ ଗୁନ୍ଥିଚ ! ମାତା ! ମୁ ଯେଉଁଦିନ ମରିବ ମୋ ମଲାଦେହ ଉପରେ ଏହିପରି ଗୋଟିଏ ହାର ଗୁନ୍ଥି ଥୋଇ ଦେବ—ମୋର ସେଇଆ ତେଇ ।

ହର ।—( ଜିହ୍ୱାଦଂଶନ କରି ) ଛି ଛି ବୋହୂ ଏପରି କଥା କାହିଁକି କହୁଛ !

ରସ ।—ମାତା ! କୁଞ୍ଜଲତାଟିଏ ଆଣି ଆପଣା ବଗିଚ୍ଚାରେ ଲଗାଇ ତାର ଯତନ ନ କଲେ ସେ ଲତାର ଦଶା କି ହବ କହିଲ ?—ମାଟିରେ ପଡ଼ି ଧୂଳିରେ ଗଡ଼ି ହଜାର ଲୋକର ଗୋଡ଼ତଳେ ଦଳି ହେଇ ତାର କି ଜୀବନ ରହିବ ? ମୋତେ ଯତନାଇବାକୁ କିଏ ଅଛି ?—ମୋର ଯେ ହୁଅନ୍ତା ତାରତ ଦଶା ଦେଖୁଛ । ଆଉ ଶାଶୁବୁଢ଼ୀ ?—ତାଙ୍କର ସେବା କରି

ମୁଁ ଜାଣିଚି—ତାଙ୍କର ସ୍ନେହ ପାଇ ମୁଁ ଜାଣିଛି—ତେବେହେଲେ ବାର ଲୋକର ଗଞ୍ଜନାରେ ମୋର ଆଉ ଅବସ୍ଥା ଥାଆନ୍ତା ?

ଦଇ ।—ଶାଶୁ ତୁମର ଯେତେ ଭଲ ଶ୍ୱଶୁରବ ସେମତ । ଏପରି ଶାଶୁ ଶ୍ୱଶୁର କେଉଁ ବୋହୂଟା ଭାଗ୍ୟରେ ଘଟିଥାଏ ?—ତୁମେବ ତହିଁ କ ସୁଖଇଏ ?

ଉଷ ।—ଚୁଲ୍ଲୀ ପାଉଁଶ !—ମାଉ ! ମୋର ସୁଖ ଦୁଃଖ କା ଉପରେ ?

ଦଇ ।—ଆଉ ତା କାହିଁକ କହୁଚ ! ନିଶା ଖାଇ ସେତ ଆପଣା ବଶରେ ନାହିଁ—ଖାଲି ବାପ ମାଙ୍କୁ ଟିକଏ ଲୋହ୍ମଡ ଡରିଥାଏ ବୋଲି ଗାଁଯାକ ନାଚନ୍ତି ଅଛନ୍ତି । ତେବେବ ତୁମକୁ ଗଣିବାକୁ ମାଟାର ଡ ଜୀବନରେ ଜୀବନ ଦେଇ ନାହିଁ । ନିଶା ଖାଇବ—ଦାଣ୍ଡ ଘର କରିବ—ଘରେ ଯେ ଗୋଟାଏ ଲକ୍ଷ୍ମୀ ଧନଗଡ଼ ଝିଅମଲୁଟି ତାକୁ କ ତା ଟିକଏ ବାଧୁଚି ।—ମଲା ମୋ ! ସହାନ୍ତରେ ଜଣଅଉ କେଉଁ ସୁକଣ୍ଠ କଇ ନାହାନ୍ତି କ ?

ଉଷ ।—ଛି ମାଉ ତାଙ୍କୁ ଆଉ ଗାଳି ନାହିଁ—ସେ ମୋର କପାଳ ଦୋଷ ! ସେ ଯାହା କରୁଚନ୍ତି କରନ୍ତୁ—ସେ ସୁଖରେ ଥିଲେ ହେଲା—ମୋ କପାଳ ପୋଡ଼ ଯାଇଚ ନା ଯିବାକୁ ବାକି ଅଛି ! ( ଲୁହ ପୋଛୁବା )

ଦଇ ।—ଛି ବୋହୂ ! ଆଉ କାନ୍ଦ ନା—ଆଖିଟା ଫୁଲି ନାଲି ହୋଇ ଗଲାଣି—ତୁନି ହୁଅ, ତୁନି ହୁଅ ।

ଉଷ ।—ନା ଆଉ କାନ୍ଦିବ କାହାପାଇଁ—କେହି କ ଆସି ମୋ ଲୁହ ପୋଛି ଦେବ ! (କାନ୍ଦି କାନ୍ଦି ହେବା ଓ ଲୁହ ପୋଛୁବା ) ।

ଦଇ ।—ଛି ଛି ଆଉ ସେଗୁଡ଼ାକ କହ ନା !—କଣ କହିବ କହ ?—କହନ୍ତି, ଯେବେ ମାଠିବୁ ମାଠ—ନା ମୁଁ ସେହି ଦରପୋଡ଼ା ତାଠ

ପ୍ରେମ କି ପସାରେ ଅଛି—ରାଧା କୃଷ୍ଣ ପରି ଲଛି,
ସେ ଧନ ସିନ୍ଧୁର ଗର୍ଭେ ଡୁବାଇଲି ମୋ ତନୁ ସବୁ ସାଉଁଛି ।
ଯେବେ ଯା ବୋଲନ୍ତି ପ୍ରେମ—ଅଟଇ ତା ଭଣ୍ଡପଣ,
ଅଟେ ସୁଖକଥା ପଛେ ମଥାବ୍ୟଥା ଶେଷକୁ ନ ଥାଏ କିଛି ॥

ରସ ।—(ଦୀର୍ଘନିଶ୍ୱାସ ତ୍ୟାଗ କରି) ସତ ଗୋ ସତ !

ସ୍ୱର ।—ଆଉ,

ସେ ଭଲ ପୁରୁଷ ହୋଇବ କିଏ, ସ୍ତ୍ରୀର ପାଦ ନେଇ ମସ୍ତକେ ଦିଏ ।
ଶ୍ରୀକୃଷ୍ଣ ରାଧାର ଯଥା ଶ୍ରୀକୃଷ୍ଣର ତାଙ୍କୁ ଭଜାଇନ କରିବ ତା ॥

ରସ ।—ଆହା ! ତାଙ୍କ ପରି କିଏ ହେବ !

ସ୍ୱର ।—ପୁଣି,

ଦିନେ ରାଧାଙ୍କର ଭେଟ ନ ପାଇ, ଶ୍ରୀକୃଷ୍ଣ ଅତ୍ୟନ୍ତ ହୋଇଲେ ବାଇ,
କେତେ କଣ୍ଣୀସ୍ୱନ କଲେ ଯାଇ ଘନ ଯେତେବେଳେ ନ ଦେଲେ ରାଧାଙ୍କ ଗାଇ ।
ତହୁଁ, ପିନ୍ଧିଲୁଗା ଶାଢ଼ି ଓଢ଼ଣା ଧରି, ନିପଟାଲେ ଦୃଢ଼େ ବନ୍ଧନ କରି,
ନେଇ ବେଳବେଳେ ଦୂତିକା ସେ କାଳେ ଓଟାରି ଧଇଲ ପଛରୁ ଯାଇ ।
ଫାଟିଗଲା ଛାତି ଚନ୍ଦ୍ରବଦନ, ନ ଶୁଣିଲା ଆଉ କିଛି ବଚନ,
ଏତିକି କଥାକୁ ଏତେ କଥାଁହା ଏ ବୋଇଲା ଦୂତିକା ଶ୍ରୀମୁଖ ଚାହିଁ ।
ଜ୍ଞାନବାନ ଅଟ୍ଟ ଶ୍ରୀକୃଷ୍ଣ ଏଡ଼େ, ଅଜଣେ ମୂରୁଖ ହୋଇଲ କେଡ଼େ,
ରାଧିକା ଏ କଥା ଶୁଣିଲା କାଳରେ କେତେ ବା ଗଞ୍ଜଣା ଗଞ୍ଜିବ ନାହିଁ ॥

ରସ ।—ଭଲ କଥାଏ ପକେଇଲ ମାତା !

ସ୍ୱର ।—ତହୁଁ

କହିଲେ ଶ୍ରୀକୃଷ୍ଣ ମନ୍ଦହାସେ, କ କହ ଦୂତିକା ରାଧିକା ପାଶେ,
ପରାଣରାଧିକା ବନ୍ଧନେ ପରାଣ ଛେଳୁଥିଲି ମୁହିଁ ଭ୍ରମେ ।
ମୋର ପରାଣ ଯେ ତାଙ୍କ ପରାଣ, ଏ ଗଲେ ସେ ଯିବ ନ ହେବ ଆନ,
ବୁଝି ନ ପାରିଲ ଠିକେ ହୁଡ଼ିଗଲି ଭୂଲି ଭୂଲି କିବା ଭ୍ରମେ ।
ତରୁସ ଦୂତିକା ଏମନ୍ତ କାଳରେ ଅଡ଼େ ଦେଲା ଅଖିଠାରି ।
ବୋଇଲେ ଶ୍ରୀକୃଷ୍ଣ କେବଣ ପରୀକ୍ଷା ଏ ହେଲା ଧନ୍ୟ ତୁ ନାରୀ ।
ରାଧିକା ସୁନ୍ଦରୀ ଏସନ କାଳରେ କାନ୍ଦାବଲେ ଉଭୁଅନ୍ତି ।
ତହୁଁ, ଅନନ୍ଦଉଲ୍ଲେଳରେ ଭେଳ ହେଲେ ସକ୍ଷେ—ପ୍ରେମ କି ଭଲ ଏଠାରୁ ?

(ଗୀତ)

ରାଗିଣୀ ପୂରବୀ । ତାଳ ଏକତାଳୀ ।

ଅରେ ରସଲତା ! କେବେ ନ ସହିବ ତୋର ଚିତ୍ତ ବ୍ୟଥା ।
ଏ ଯେ ସଂସାର-ସାର ସବୁ ସରିଗଲା, ସ୍ୱର୍ଗ-ସ୍ୱପନେ ନର୍କରାଜ ରାଜ୍ୟ ହେଲା;
କଲକାଳକୁ ପାପ ଦିଏ ଯା ମନସ୍ତାପ ହେଲେ ବି କେ ତାକୁ ଭୁଲି କହ —
ଅରେ ରସନାର ! ତୋତେ ଦୁଃଖଗଞ୍ଜନା ଯା ଦେଲା ସାର । ୧ ।
ଦିବ୍ୟ ସୁଧାପାନ ଅନ୍ତ ଲୋକେ, ବିଷପାନେ ମାତିଲେ ଥୋକେ ଥୋକେ
ଛାଡ଼ି ଗଲାଣି କୁଳ-ଧର୍ମ-ଆଚାର-ମୂଳ ଝୁରି ପଡ଼ିଲାଣି ପଦରେଖା —
ଅରେ ରସଲେଖା ! ଲୋକ କପାଳକୁ ସଦା ଦୁଃଖ ଦେଖା । ୨ ।
ଏବେ, ସନ୍ତାପ ସାଗରେ ସନ୍ତରଣ ବିନା ଗତି ନାହିଁ ତୋହର ଭବେ ଆନ ।
ଲୋଡ଼ିଥିଲୁ ତୁ ଯାକୁ ଭୁଲିବା ହେବ ତାକୁ ଭୁଲିଲାଣି ସେ ତୋତେ ଥିର କର —
ଅରେ କ୍ଷୀଣୋଦର ! ଡାକ ଜଗତପତାଙ୍କୁ ଝୁରି ମର । ୩ ।

ରସ ।—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଏକା ସେଇଅ—ଭଗବାନ୍ ଏକା ମୋ ଭରସା !

ହର ।—ମଣିଷର ଆଉ ଗତି କି ଅଛି—ସବୁ ଭଗବାନଙ୍କ ମାୟା—ସବୁ ଭଗବାନଙ୍କ ଲୀଳା ।—କି ଗୋ ଯମୁନା !

[ ଖଣ୍ଡିଏ ଛବି ଘେନ ଯମୁନାର ପ୍ରବେଶ ।

ହାତରେ କଣ କି ?

ରସ ।—ତାହୁଣ୍ଡ । ମୁଁ ଯା ଛିଣ୍ଡେଇ କି ପକେଇ ରଖିଥିଲି ମୋତେ ଶଏଥର ତା ଦେଖେଇ ବୁଲୁଚି ।

ଯମୁ ।—ମାଲୋ ଏତେ ରୋଷ କାହିଁକି—କଣ ହେଇଗଲା ସେଇଠି ? ଯା ଦିବାର ତା ତ ହେଇଚି—ଯାକୁ ଛିଣ୍ଡେଇ ପକେଇଥିଲେ କଣ ହେଇଥାନ୍ତା ?

ହରି ।—କଣ ସେଥିପା କହୁ ନା—ସେଇଠି ବସ । ( ଖଣ୍ଡିଏ ପ୍ରସ୍ତର ନିର୍ଦ୍ଦେଶ ) ।

ଯମୁ ।—( ବସି ) ଦେଖ କଣ । ( ହରିଦାସୀକି ଛବି ପ୍ରଦାନ ) ।

ରସ ।—କିସ କହୁବ ବେଲ ! ଭୁ ମନେ କରୁ ସବୁ ରଙ୍ଗ—ମୋର ତା ଦେଖିଣ ବେଲକୁ ଅଙ୍ଗ ଜଳଯାଏ !

ଯମୁ ।—ମାଲୋ—ଏଇ କଥାକୁ ମୁହଁଟା ଏଡ଼େ ଖାସି କରି ଦଉଚ—ଦଥ ଟୋ ମାତା !

ହରି ।—ରହ ରହ ମ, ଏ କାହା ଛବି ?

ଯମୁ ।— କହୁବ ସେ ପାପକଥା । ଆମ ଗୁଣବାନ ପଣ୍ଡାଏ ଟିଏ ରଖିଚନ୍ତି, ମାଇପକୁ ଦେଖେଇବା ପାଇଁ ତାର ଗୋଟାଏ ଛପା ଉତାର ଆଣିଥିଲେ ।

ହରି ।—( ଜିହ୍ୱା ଦଂଶନ କରି ) କଅଣ ! ଦାସୀଟାର ଛବି ଦେଖେଇବା ପାଇଁ ମାଇପଙ୍କ ଭିତରେ ଆଣିଥିଲା ! ଅଛ୍ ହବ ନାହିଁ !—ଅଲୋ ଏ ରୂପଟା କଣ ସୁନ୍ଦର ହୁଗୁଡ଼—ଅଲୋ ସେ ଆମ ବୋହୂର ଜାଣିଅଙ୍ଗୁଠିକ ସର ହବ ନା ଅତ୍ତଗ ?

ଯମୁ ।—ତୁମେ ଦେଖ, ମୋତେ ପଣ୍ଡୁରୁଚ କାହିଁପେଇଁ । ଗୋଟାଏ ଗୋଟାଏ ଲୋକଙ୍କ ପରକୁତ—କହୁବା କାଥକୁ !

ହରି ।—ଛି ! ଛି ! —ଯମୁନା ! ଏ ଛବି ଅଙ୍କା ହେଲା କେମିତ ? ଏ ସବୁକୁ ସବୁ ଗୋଟିଏ ଡାଲି ପରି ହୁଅଚ ।

ଯମୁ ।—ସେ କଲରେ ଛପି ହେଉଥ ମ ।

ହରି ।—ହଁ କଲ ମୋହୁଲେ ଫେର ଏମନ୍ତ ଅଙ୍କିବ କଏ ? ସରକାର କେତେ ପରକାର କଲ କଲାଣି—ଖାଲି ଜୀବଦାନ ଦେଇପାରୁ ନାହିଁ ।

ଯମୁ ।—ହାତରେ ଫେର କଏ ଅଙ୍କିବ ?—ଦଅ ଦଅ ସେ କାହ- ଣି । ( ଛବି ନେଇ, ଅଞ୍ଚଳେ ରସମଞ୍ଜରୀର ଲୁହ ପୋଛୁ

ଦେଉଁଦେଉଁ) ଛି ବୋଲ ! କେଣ୍ଟେ କାନ୍ଦୁଚ । ଦେଖଟା କାନ୍ଦି କାନ୍ଦି ଫୁଲିଗଲଣି—ସୁନାର ଗଛଟା ଯେମନ୍ତେ ଝାଉଁଳି ଯାଉଚ !

ହର ।—( ଆପଣା ଲୁହ ପୋଛି ) ଆହା ! !—

ଯମୁ ।—( ଆପଣା ଲୁହ ପୋଛି ରସମଞ୍ଜରୀର ଲୁହ ପୋଛି ଦେଇ) ସେ କ ବୋଲ ! କପାଳରେ ଦୁଃଖ ଅଛି ବୋଲି କଣ ସଂସାରର ସବୁକଥାକୁ ତୁଚ୍ଛ କରୁଚ ?

ରସ ।—ବୋଲ ! ସଂସାରରେ ମୋର ଆଉ କଉଁ କଥା ଅଛି ! ମୋ ଅବସ୍ଥାରେ ବଞ୍ଚିବା କ ସୁଖର କଥା !—ଫୁଲଗଛଟିରେ ପାଣି ଦେଲେ ସେ ବଞ୍ଚେ ନା ଶୁଖିଲା ଭୂଇଁରେ ଗୃହପାଖର ଗଛ ପାଇଁ ବଞ୍ଚେ । ମୋର ଅଛି କଣ ମୁଁ ବଞ୍ଚିବ ! (କ୍ରନ୍ଦନ)।

ହର ଓ ଯମୁ ।—( ଉଠିଯାଇ ) ଛି ଛି ତୁନି ହୁଅ ତୁନି ହୁଅ । ( ଲୁହ ପୋଛିଦେଇ ମୁଖରେ ଜଳ ଦେବାର )।

[ କନକଲତାଙ୍କର ପ୍ରବେଶ ଓ ସମସ୍ତେ ତୁନିତାନି ହୋଇ ଛିଡ଼ା ହେବାର ।

କନକ ।—ଯମୁନ ! ବୋହୂ ଅଛି କି ଏଠି ?—ଘଢଟା, କାକର ପଡ଼ୁଚ, ଆସ ମା ମୋ ସଙ୍ଗେ ଆସ ।—ଆଉ କଏ—ମାତା କି ?

ହର ।—ଛ ଗୋ !

କନ ।—ତୁମର ପାଇଁ ବୋହୂ ଏତେବେଳଯାଏ ଏଠି ବସିଯାଇଚ, —ଆଉ ତା ମନ ଲାଗିବ କଉଁଠି ? ଆସ ମା କାକର ପଡ଼ ନ ସମ ହବ ।—ଯମୁନି, ଯିବୁ ନା ଆ ।

ଯମୁ ।—ମୁଁ ଟିକଏ ଛାଡ଼ି ଯାଉଚ ।

ରସ ।—( ପ୍ରସ୍ଥାନ ) ।

କନ ।—ହଉ ଅ, ଆଉ କାକରଟାରେ ବସ ନା । ( ରସମଞ୍ଜରୀର ପଶ୍ଚାତ୍ ପ୍ରସ୍ଥାନ ) ।

ଦତ୍ତ ।—କେତେ ଯନ୍ତ୍ରଣା ବୋହୂକୁ ଆସି ଘଟିଚି !

ଯମୁ ।— ଆଉ ତା କାହିଁକି କହୁଚ ? ପୁଣି ଆଜି ଅମଳ ଭାଇ ଘଟିକ ଆସିଥିଲେ ଜାଣ ?

ଦତ୍ତ ।—ହଁ ଶୁଣିଥିଲି—ସେହି ପଛ ଆଉ ଗୁଳିଗଲାଣି ?—ସର-କାରୀ କାମ କରୁଥିବ ।

ଯମୁ ।—କ ସରକାରୀ କାମ ମ ? ସେ ସାହର ପୁଅଟିଏ କଣ ଘଟିକ ଆସି ନାହିଁ ?

ଦତ୍ତ ।—ହଁ—ସେ—ଏ—କଣ ତା ନା ଅସୂ କାହିଁ ।

ଯମୁ ।—ତାର କ ସରକାରୀ କାମ ନାହିଁ ? ସେ ଅଇଲା କେମିତେ ଯିବ କେମିତେ କେହି ଜାଣିବ ? ସେ ଅମର ଅଁସିକର ଖରଖର ଫରଫର—କଣ ଖାଇବ କାହାକୁ ମାନିବାକୁ ନାହିଁ !—ବୋହୂର ପିଠି ଦେଖିଚ ?

ଦତ୍ତ ।—( ହସ୍ତେ ) କଣ—କଣ ମ ?

ଯମୁ ।—ଆଉ କେବେ କଣ—ବୋହୂର ପିଠିର ଅଗେ ଅବସ୍ଥା ଅଛି ? ପଲେ ମାଉଁସ ଉଠି ଯାଇଚ ପରା !

ଦତ୍ତ ।—କଣ ମାଡ଼ଖାଇ ?

ଯମୁ ।—ଯୋଡାରେ ।

ଦତ୍ତ ।—( ଜିହ୍ୱା ଦଂଶନ କରି ) ଆଉ କବ ନାହିଁ । ଛି ଛି କାଳ ସଇଲା !

ଯମୁ ।—ଗୁଣମଣି ଏ ଛବ ଖଣ୍ଡକ ଆଣି ବେଲକୁ ଦେଖେଇ କହିଲେ ଦେଖନ ଏ କେମନ୍ତ ସୁନ୍ଦର ରୂପ ! ବେଲ ତ ଅଗନ୍ଧୁ ଶୁଣିଥିଲା କହିଲା ଏଇଟା ମୋର ସଉତୁଣୀ ପରା ।—ଆଉ କହିକର ଯିବ କୁଆଡେ—ମାଡ ଶବଦରେ ତ ଘର ଭାଙ୍ଗି ପଡଲା । ମୁଁ ଉଠିଯାଇ ଗୁଣମଣିକି ଟାଣିଆଣି ବାହାରେ ପକେଇ ଦେଖେଁ ଯେ ବେଲ ମୂର୍ଚ୍ଛା ଯାଇ ପଡଚି ।—କଣ

ଉଦ୍ଧବ—ବଡ଼ଲୋକଘର ଝିଅକୁ ଛନ୍ଦ ଦେଇ ସାଆନ୍ତାଣୀ ଆମର ବନ୍ଧୁତ ହଟହଟା ହେଲେଣି ।—ଟିକିଏ ଗଲାଠୁଁ ଯନ୍ତୁଁ ଜଣା କମିଗଲା ଗୁଣମଣିର ଯୋଡାଛଡା କେଇ ଚାଲ୍ କଲେ—ଯାହା ନା କଣ ?

ହର ।—ଛି ଛି ! ଏ ଭାଲ ହେଲା—ବର୍ଷେ ହବ ତ ନାହିଁ ବାହାଘର ।

ଯମୁ ।—ଆଠମାସ ମ । ଦେଖୁଚ ତ ଯୁଆଡ଼ବ୍ରତରେ ବେଲ୍ କେମନ୍ତ କଣ୍ଢାପର ହେଇଗଲାଣି ।

ହର ।—ବୟସ କେତେଗୁଡ଼ାଏ ହବ କି ?

ଯମୁ ।—ପନ୍ଦର ବରଷ ।—କହନ୍ତି ବାହା ହେଲେ ଗୁଳ ଉଲଣ ଫେଇଯାଏ ଯେ ଆମର ଗୁଣମଣିଙ୍କର ତ ଗୁଣ ଅଧିକ ଅଧିକ ବାହାରୁଚ ।

ହର ।—ଛି ଛି !—ଅହା ମୋ ମନ ତୁମ ବୋହୂପାଇଁ ବଡ଼ ଖାଣ୍ଡି-ହଉଚ ।

( ଗୀତ )

ଗଗିଣୀ ଝିଁ ଝିଟ—ତାଲ ଖେମଟା ।

କେଉଁ ସୁଖାଶାରେ ଏ ପାପ-ସଂସାରେ ବଞ୍ଚିବାକୁ ମନ ବଳବ ।
ଅତଘୋର ବ୍ୟଭିଚାର ଦେଖି ଖତରେ ହାହାର ସହିବ । ପଦ ।

ଭାସିଲେ ପୁରୁଷେ ପାତକ-ଜଳେ,
ଖସିଲେଣି ସର୍ବେ ଅଧର୍ମ ଫଳେ,
କଳଙ୍କୀ ହେଲେଣି କଲଙ୍କ ବଳେ,
ଦୁଃଖ-ଜଳେ ଭବ ଭାସିବ ( ଏବେ ) । ୧ ।
ପୁରୁଷ ଛାୟାରେ ଆଶ୍ରିତା ନାରୀ,
ସତେ କରେ ବର୍ଣ୍ଣ ହୋଇବ ପାରୁ,
ଭବାନଣି ଶୋକ ଦେଲାଣି ସାଉ,
ଏ ଶୋକ ଜୀବନ ରହିବ ( ତାର ) । ୨ ।

ସୁଭୋଜନ କୁଭୋଜନ-ସେବାରେ,
କୁଳବଧୂ ପ୍ରୀତି ନ ପାଏ ବାରେ,
ନଷ୍ଟା ବେଶ୍ୟା ସାର ହେଲ୍ଲ ଏକାଳେ,
ଏ ଘୋର ପାପ କେ ଦେଖିବ (ହବ) । ୩ ।

ନେପଥ୍ୟେ !—ଘଣ୍ଟା ଓ ଘଣ୍ଟାଧ୍ୱନି ।

ହରି ।—ଯମୁନା ! ଚାଲ ଠାକୁର ଭୋଗ ଆଳତି ହେଲାଣି ।

[ହରିଦାସୀ ଓ ଯମୁନାର ପ୍ରସ୍ଥାନ ।

ଯବନିକା ପତନ ।

(ନେପଥ୍ୟେ ଗୀତ)

ରାଗିଣୀ ବେହାଗ । ତାଳ ଯତି ।

ଗୋ ଏଥର—ଅଛିକ ନ କଲେ ପଥର ।
ଝୁରୁଝୁରୁ ହବା ନାଶି ଯିବ ଜୀବ ମାତର । ପଦ ।
ପ୍ରଣୟ-ପାଦପ ହେଲେ ସ୍ନେହ-ଲତା ତ୍ୟାଗ କରେ,
ନ ଜାଣେ ଲତିକା ଏକା ଏ କାଳକୁ ହୁତର । ୧ ।

—·———

# ତୃତୀୟ ଅଭିନୟ ।

ପ୍ରଥମ ଦୃଶ୍ୟ—ପାବ୍ଦତୀ ବାଇର ଘର ।

[ ଗୃହଟି ଅତ୍ୟନ୍ତ ସୁସଜ୍ଜିତ, ତଳେ ମଜଲିସ ପ୍ରାୟ ବଛଣା, କୃଷ୍ଣଚରଣ, ଗଙ୍ଗାଧର, ବଂଶୀବଦନ ଓ ଅନ୍ୟାନ୍ୟ ବାବୁମାନେ ଅର୍ଦ୍ଧ ଗୋଲାକାର ଭାବରେ ଉପବିଷ୍ଟ । ସମ୍ମୁଖେ ଥାଉ ଦୋଇ ଅଠଗୋଟି ବୋତଲ ଓ ଅଠଗୋଟି ଗ୍ଲାସ ଏବଂ ଭିନ୍ନ ବାସନରେ କିସ୍‌ମିସ୍, ବାଦାମ, ପେସ୍ତା ଓ ଗୁଜରାଟ ସଂସ୍ଥାପିତ, ମଧ୍ୟଭାଗରେ ପାବ୍ଦତୀ ବାଇ କୃଷ୍ଣଚରଣ ଅଙ୍କରୁ ମୁଣ୍ଡକର ଉପବିଷ୍ଟା ]

କୃଷ୍ଣ ।—ବଂଶୀବାବୁ ! ସହରେ ଯେତେ ବାଇ ଅଛେ ଅମାଦେର ପାବ୍‌ଜୀ ବାଇର ମତନ ଅବ୍ରୁ କୋଟିଏ ଦେଖା ନାଇ ।—ଅଜ୍ ଯେମନ ଶନିବାର—ତେମ୍ନି ମଙ୍ଗଳବାର—ଅଚ୍ଛା ତେମନି ପାବ୍‌ଜୀବାଇ ।—ଅତଏବ ସଂଗଲେ ମିଲେ ପାବ୍‌ଜୀ ବାଇର ବାରେ ଜୟ ଘୋଷଣା କର ?

ସମସ୍ତେ ।—ଜୟ ପାବ୍‌ଜୀ ବାଇ କ ଜୟ ! କ୍ୟା ମଜାଦେ ।

କୃଷ୍ଣ ।—ଅବଦୁଲ୍ଲା—

ନେପଥ୍ୟ ।—ଜି !

କୃଷ୍ଣ ।—(ବୈଶବରେ) ଆଙ୍କରଡାକେ ଏସ୍ତ୍ରୀ ବଗର ?-ଯଲଦ ଅଓ ।

[ ଅବଦୁଲ୍ଲାର ପ୍ରବେଶ ।

ଦୋ—ସବକୋଇକୁ ଏକ ଏକ ଗ୍ଲାସ କରୁକେ ଅଗେ ବ୍ରାଣ୍ଡି ଦୋ ବାଦ ଉସ୍‌କେ ତୁମେ କ୍ୟା ଖାନାଉନା ବନାୟେ ଦୋ ଲେଇଅଓ ।

ଅବ ।—(ଏକ ବୋତଲ ଖୋଲି ବ୍ରାଣ୍ଡି ଗ୍ଲାସରେ ଢାଳି କୃଷ୍ଣଚର-ଣଙ୍କୁ ଦେବାର ) ।

ବଂଶୀ ।—ଏ ବେଟା ଅନେକ ଘଡ଼ି ଦେର କରବେ—ଅମ୍‌ସ୍ ବ ଡାକଯେ ଓର ମୁଖ୍ ଖାନା ଦେଖ୍‌ତେ ଥାକ୍‌ବୋ ? ( ଏକ ବୋତଲ ଖୋଲି ବ୍ରାଣ୍ଡି ଗ୍ଲାସରେ ଢାଳି ପାନକରଣ ) ।

ସମସ୍ତେ ।—(ଯେଷ୍ଟା ଇଚ୍ଛାମତେ ଏକ ଦୁଇ ଗ୍ଲାସ ମଦ୍ୟପାନ ଓ ଚଂ ସ୍ନିସ୍ ଇତ୍ୟାଦ ଗୃଷ୍ଟ ଭକ୍ଷଣ ) ।

ବଂଶୀ ।—ବଡ଼ା ଅଚ୍ଛା ହୁଅ । ପାବଂଢ ! ତୁଇ ଯେ ଢୋଇ ମଦ ଖେଲନା ?

କୃଷ୍ଣ ।—ଖାଉଅଥ, ଖାଉଥଅ ଡାକେ ।

ପାବଂ ।—ମୁ ଖାଇବ ନାହିଁ ।

ବଂଶୀ ।—ହାଁ ବେଟି ଖାବନା ?

ସମସ୍ତେ ।—ହୋ ହୋ ଏକଗ୍ଲାସ—ଖାଇବ ନାହିଁ ?—ଅବଶ୍ୟ ଖେଉଛ ହବେ ।

ବଂଶୀ ।—(ଏକ ଗ୍ଲାସ ମଦ ଖୁଆଇ) ଆଉ ଏକଟୁ ଖା ।

ପାଙ୍କ ।—ନାହିଁ—ମୁଁ ଆଉ ଖାଇବ ନାହିଁ ।

ବଂଶୀ ।—ଏଇ ଏକଟୁ—ବେଶୀ ନୟ ?

ପାଙ୍କ ।—ନାହିଁ, ମୋତେ ନିଶା ହୋଇଯିବ—ମୁଁ ଖାଇବ ନାହିଁ ।

କୃଷ୍ଣ ।—ମୋ ଘଣଟି—ସେଇଟିକକ ଖାଇଦେ ।

ପାଙ୍କ ।—ଏଁ ବାବୁ ! ଏଡ଼େ ବଡ଼ ଘଣଟାଏ ପକେଇଲ—ଅଲେଇ ବଲେଇ ସବୁ ଝାଡ଼ିଝୁଡ଼ି ଯାଉ ।—ଢ଼ଉ, କହଲେଣି ଢ—(ହସ୍ତ ପ୍ରସାରଣ) ।

ବଂଶୀ ।—ନାହିଁ ଆମି ଖୁଆଇ ଦବେ ।

ପାଙ୍କ ।—ମୁଁ ଏତେ ସଗଗ ।

ବଂଶୀ ।—ନେ ଖା ଆଗେ—ଆହ୍ଲାଦେ ଅଟଖାନା ହୟେ ଯାଛେ ।
(ଉଠି ଯାଇ ପାଙ୍କଙ୍କ ମୁଖକୁ ଆପଣା ଜଙ୍ଘଉପରକୁ ଓଲଟାଇ ନେଇ ମଦ ପିଆଇ ଦେବାର) ।

ଗଙ୍ଗା ।—କୃଷ୍ଣବାବୁକା ଜୟ !

ସମସ୍ତେ ।—ଜୟ ଜୟ ! କୃଷ୍ଣବାବୁକା ଜୟ !

ବଂଶୀ ।—ଏସେଇ ଆନନ୍ଦ ଲେଗେ ରହେ ।

ନେପଥ୍ୟେ ।—କବାଟରେ ଆଘାତ ଧ୍ୱନି ) ।

ବଂଶୀ ।—କେ ଓ ?

କୃଷ୍ଣ ।—କୋନ୍ ହେ ?

[ ପରଶୁର ପ୍ରବେଶ ।

କ୍ୟା ହେ ପରଶୁ ?

ପର ।—(ବାଇକଟକୁ ଯାଇ ଚୁପକରି) ଇନ୍‌ସ୍‌ପେକ୍ଟର ବାବୁ ଆସିଛନ୍ତି ।

ପାର୍ଜ ।—କେମ୍‌ନେ ହବ ?

କୃଷ୍ଣ ।—କୋନ୍ ଇନ୍‌ସ୍‌ପେକ୍‌ଟର ?—ଚଲ୍ଲ ଯାଓ ।

ବଂଶୀ ।—ଶାଲା କେ ଇନ୍‌ସ୍‌ପେକ୍‌ଟର ବେ—ବସ୍—ଚଲ୍ଲଯାଓ ।

ସମସ୍ତେ ।—ନିକାଲ୍ ଦୋ—ମଜ୍‌ଜକେ ବଖର ଭଣ୍ଡୁର କରନେ ଆଯେ ।

ପଲ ।—(ଅନୁଚ୍ଚ ତୂପକର ପାର୍ଶ୍ବଗ କାନରେ) ଇନ୍‌ସ୍‌ପେକ୍‌ଟର ଆଉ ଦ ଗୃହ ବାବୁ ଅସିଚନ୍ତି ।

ପାର୍ଜ ।—(ଟିକଏ କୃଷ୍ଣଚରଣ ଆଡ଼କୁ ଅନାଇ) ନାହିଁ । ମଜା ହବ ଦଅ ବୁଝେଇ—ବାବୁ ଅଛନ୍ତି ।

ନେପଥ୍ୟେ ।—(ପୁନର୍ବାର ଦ୍ବାରରେ ଧକ୍କା ମାରିବା ଶବ୍ଦ ) ।

ବଂଶୀ ।—କେ ଓ ଶାଲା ?

କୃଷ୍ଣ ।—ଯାଓ ତୁମ୍ ମନା କରଦୋ ।

[ପରଶୁର ପ୍ରସ୍ଥାନ ।

ବଂଶୀ ।—ବେଟା ଇନ୍‌ସ୍‌ପେକ୍‌ଟର ଦେଖାଚ୍ଛେ—ହମ ପୁଲିସେର ଇନ୍‌ସ୍‌ପେକ୍‌ଟରକେ ହଜମ୍ କରେ ଦିଯେଛି । କଲ୍‌କାତା ହତେ ନେ ବେଟାକେ ଦେଖିଯେ ଦଭୁମ୍ ।

କୃଷ୍ଣ ।—ହେଁ ମଜଲିସ୍ ବଂଶୀବାବୁ ଥଣ୍ଡା ହୟେ ଯାଛେ ଯେ ।

ବଂଶୀ ।—ନା, ନା, ଦେଢ଼ୋ ରେ ଶ୍ଲାସ୍ଟା ?

ସମସ୍ତେ ।—( ପୁନର୍ବାର ଥରେ ଦୁଇ ଥର ପୂର୍ବପ୍ରାପ୍ତ ମଦ୍ୟପାନ ଓ ଗୃଟ ଭକ୍ଷଣ ) ଖାସାବ୍ରାଣ୍ଡି, ଜୟ ରହେ, ହରବୋଲେ !

ବଂଶୀ ।—ହେ କ୍ରିଷ୍ଟବାବୁ, ଏକ୍ ଆଦ୍‌ଟା ଏସମୟ ଗାନ୍ ନା ହଲେ କେମନ୍ ଅମୋଦଟା ପାନ୍‌ସେ ପାନ୍‌ସେ ହୟେ ଯାଛେ ।

କୃଷ୍ଣ ।—( ଉଚ୍ଚେ ) ଡାଇଭୋ । ବାଇସାହେବ—ତୁମ୍ ମେରା ବାଇ ସାହେବ । ଏକ୍‌ଟୋ ଗୀତ ଫରମାସୀ ଦେଖି ଗାଓନା ।

ବଂଶୀ ।—ଗାଓ ଗାଓ—ଅମି ତାଲ ଦିଚ୍ଛି—ଓରେ ଧରତୋ ଓହକେ ସାରଙ୍ଗା ଆର ତବ୍‌ଲାଟା ।

ନେପଥ୍ୟେ ।—( ବାଦ୍ୟ )

[ ଗୀତ ସମସ୍ତେ ବଂଶୀବାବୁ ଥରେ ଦୁଇଥର ତାଳ ମାରୁ ସମସ୍ତେ କ୍ରମେ ମସ୍ତକ ଭଙ୍ଗୀକରି ତାଳରେ ତାଳ ଦେବାର ଓ ମଧ୍ୟେ "ବ୍ରାଭୋ" "ବାହ୍ୱାବା" ଶବ୍ଦ କରିବାର । ]

ପାଙ୍କ ।—( ଗୀତ )

ରାଗିଣୀ ଶଙ୍କରା—ତାଳ ଅଡ଼ଖେମ୍‌ଟା ।

ସତେ କି ନାଗରବର ଦାସୀକି ମନେ ରଖି'ଛ ।
ଭୁଲି କାର ନୂଆଭାବେ ଦାସୀକି ପାସୋରିଅଛ । ପଦ ।
ଥିଲା ଭାବ ନୂଆ ଯେବେ, କେତେ ଗର୍ବ ଥିଲା ତେବେ,
ଭାବକୁ ଅଭାବ ଏବେ ଦନୁଦ୍ଦନୁ ଭୁଲୁଅଛ । ୧ ।
ଏ ତ ପ୍ରାଣ ଜୀବଧନ, କହଁା ନୂଆ ଅନ୍ୱେଷଣ,—
ପ୍ରବଚନେ ଅଯତନ କେଉଁ ଠାରୁ ଶିଖିଅଛ । ୨ ।

ବଂଶୀ ।—ବେଡ଼େ ଗାନ୍ ।—ଗେସ୍ ଗେସ୍ ତୋଗ ସବ୍ ଅମନ୍ ଗୋଲ୍ କରିବ ତୋ କୁଛୁଇ ହବେ ନା—ଗାନ୍ ଏକ୍‌ଟା ଗାଇବେ ଯେ ତାଯୃ ତୋଦେର ଗଳା ଓକେ ଏକେବାରେ ଡୁବ୍ୟେ ଦଛେ ।

ଗଙ୍ଗା ।—ହଁ ହଁ ଡୁବ୍ୟେ ଦଛେ—

ଜନୈକ ।—( ସ୍ୱର ଧରି ) ଡୁବ୍ୟେ ଦଛେ ।

ସମସ୍ତେ ।—( ଗୀତସ୍ୱରରେ ତାଳ ଦେଇ ) ଡୁବ୍ୟେ ଦଛେ, ଡୁବ୍ୟେ ଦଛେ, ଡୁବ୍ୟେ ଦଛେ, ଦେ ଡୁବ୍ୟେ ।

କୃଷ୍ଣ ।—ଅରେ କଣ ମଦ ଖାଇବ ନାହିଁ ?

ସମସ୍ତେ ।—( ପୂର୍ବଙ୍କାର ମଦ୍ୟପାନ ଓ ଗୃଟ ଭକ୍ଷଣ ) ।

କୃଷ୍ଣ ।—( ଏକ ଗ୍ଲାସ ଓ ବୋତଲ ଉଠାଇ ) ଖାଅ, ଖାଅ— ଗୋଟିଏ ବୋତଲ ଯେମନ୍ତେ ଖାଲି ନ ରହେ ।

ସମସ୍ତେ ।—( ପୂର୍ବବତ୍ ମଦ୍ୟ ପାନ ଓ ଗୃଟ ଭକ୍ଷଣ ) ।

କୃଷ୍ଣ ।— କ୍ୟା ମଉଜ ହେ ।—ବଂଶୀବାବୁ ଅଉର ଏକଟା ଗାନ୍ ହେଲେ କେମନ୍ ହବେ ?

ବଂଶୀ ।—ଓରେ ବେଶ୍ ହବେ ରେ ବେଶ୍ ହବେ ।

ସମସ୍ତେ । —( ସ୍ୱର ଧର ) ଓରେ ବେଶ୍ ହବେ ।

ନେପଥ୍ୟେ ।—( ବାଦ୍ୟ )

[ ଗୀତ ସମୟେ ସମସ୍ତେ ପ୍ରଥମେ ଟିକଏ ଭୁଜ ହୋଇ ମୁଣ୍ଡ ହୁଙ୍ଗାରୁ ୨ ପଛକୁ ପୂର୍ବପ୍ରାପ୍ତ ତାଳ ଦେବାର ଓ ଶବ୍ଦକରଣ ଓ ଲମ୍ଫ ଓ ନୃତ୍ୟ । ]

ପାର୍ଶ୍ୱ ।—( ଗୀତ )

ରଗିଣୀ ଅହଂ—ତାଲ ଏକତାଲୀ ।

ପୀରତ ପରମଧନ ଧରା-ଧାମରେ ।

ମନେ ମନ ମିଶାମିଶି କେତେ ସୁଖ ହବାଜାଣି

କାହିଁ ତନ୍ତ୍ରା କହୁଣୀ;

ଦେହେ ଦେହ ସମ୍ମିଳନ ସ୍ୱର୍ଗଭୋଗ ଉପାର୍ଜ୍ଜନ

ତହିଁ ଭାବ କେସନ !—

ବୁଝିବ କେ ସୁଧାରସ ନ ଚାଖିଲେ ଥରେ । ୧ ।

କୃଷ୍ଣ ।—ଏ ଗୀତଟା ବେଶ୍ ହେଲା—ବେଶ୍ ହେଲା ।

ସମସ୍ତେ ।—( ଗୀତସ୍ୱରରେ ତାଳଦେଇ ) ବେଶ୍ ହେଲା, ବେଶ୍ ହେଲା ।

[ ଅବଦୁଲ୍ଲା ଓ ଅନ୍ୟ ଏକଜଣ ପଠାଣର ଭୋଜନପାତ୍ର ଗୁଡଏ ସଜାଡ଼ ଆଣି ସମ୍ମୁଖେ ସ୍ଥାପନ ଓ ପଠାଣର ପ୍ରସ୍ଥାନ । ]

କୃଷ୍ଣ ।—( ମଦଖୋଲରେ ) ଆସ—ଅବଦୁଲ୍ଲାକା ପ୍ରସାଦ ପାଇବା ।

ଗଙ୍ଗା ।—( ଭକ୍ତିରେ ) ମହାପ୍ରସାଦ ।

ବଂଶୀ ।—ଅରେ ଜଗନ୍ନାଥେର୍ କପାଲେଓ ଅମନ୍ ମହାପ୍ରସାଦ୍

ଏଜନ୍ମେ ଘଟ୍‌ବେ ନା । ଅରେ ଯେଘ୍, ଅଗେ ମଦ୍ ଖା— ସୋଡ଼ା ଢୁଅଟରୁ କୋଇ ?

[ ପଠାଣର ସୋଡ଼ାବୋତଲ ଘେନ ପ୍ରବେଶ ।

ସମସ୍ତେ ।—( ମଦ୍ୟପାନ ଓ ସୋଡ଼ାସେବନ ପରେ କୃଷ୍ଣବାବୁର ଅଚେତନ ହୋଇ ପତନ ) ।

ବଂଶୀ ।—ଏଃ ଏଁଖନ୍ ଥେକେ ଏମନ୍ ହୟେଗେଲ ! ଧରତୋ ଅବଦୁଲ୍ଲା ବାବୁକୁ ଏଇ ଖଟ୍‌ନା ଉପର ଶୁଇ ଏ ଦିୟେ ଯାକ୍ ।

[ ଅବଦୁଲ୍ଲା ଓ ବଂଶୀବଦନ ଧରାଧରି କରି କୃଷ୍ଣଚରଣଙ୍କୁ ଖଟରେ ଶୁଆଇବା ଓ ଜ୨ଣ ବାବୁଙ୍କ ଢଳ୨ ପ୍ରସ୍ଥାନ ।

ନେପଥ୍ୟ ।—( ବମନ ଶବ୍ଦ ) ।

ଗଙ୍ଗା ।—ଅରେ—ଟିକଏ ପାଣି—ଅଣ—ରେ—ଯେ ବାନ୍ତି କଲେ ( ପତନ ) ।

ଅନ୍ୟବାବୁମାନେ ।—( ଗୁନ୍ଦି ମରୁଅଲା ହୋଇ ବୁଲିବାର ) ।

ବଂଶୀ ।—ଅବଦୁଲ୍ଲା ! ଗାଡ଼ି ତୟାର ହେ ?

ଅବ ।—ଜି ବାବୁ ସାହେବ—ତୟାର ହେ ।

ବଂଶୀ ।—ଓରେ ଆୟ ସବ୍—ଗାଡ଼ିତେ ଉଠ୍‌ବ ।—ଓନ୍ନ ଅମ୍‌ନେ ଯାବେ ନାରେ—ଅବଦୁଲ୍ଲା ତୁଇ ଏ ବୋତଲ୍ ଗୁଲୋ ନୟେ ଅଗେ ଅଗେ ଚଲ୍‌ତୋ ।—ଅରେ ଓ ପାଠାନ ଖ୍ୟାଁ ଏ ବାବୁକୁ ଅସ୍ତେ ଅସ୍ତେ ଉଠିୟେ ଲେ ତୋ ।

[ ଅବଦୁଲ୍ଲା ଅଗେ୨ ଯାଅନ୍ତେ ତତ୍ପୃଷ୍ଠରୁ ସମସ୍ତଙ୍କର ଝୁଲି୨ ପ୍ରସ୍ଥାନ ଓ ପଠାଣ ଏବଂ ଅନ୍ୟଜଣେ ଗଙ୍ଗାଧରଙ୍କୁ ଟେକି ନେବାର ।

ପାର ।—ଯାଏଁ—ଖୋଇବ । ମୁଣ୍ଡଟା ସବେ ବୁଲେଇ ଦଉଚ—ବଡ଼ ଜଡ଼ା ମଦ—( ଉଠି୨ ପତନ ) ।

ନେପଥ୍ୟେ ।—ଅରେ ଅରେ !

[ ପରଶ୍ୱର ପ୍ରବେଶ ।

ପର ।—( ପାବଂଗାଙ୍କ ଧକ୍କା ) ଉଠ, ଉଠ ( ଦାଡଧର ପାବଂଗାଙ୍କୁ ଉଠାଇନେଇ ଖଟ ଉପରେ ବସାଇ ଦଅନ୍ତେ ପାବଂଗାର ଅଚେତନ ପ୍ରାୟ ଖଟରେ ପତନ )—ସେତ ଖାନା ସବୁତ ମୋର—ବାଃ ବାଃ ! ଅଜଗରକୁ ଦାନା ଗମ ।—ଅରେ ଭାଇ ଅଓନା—ଖାନା ଖଣ୍ଡା ହୋ ଯାତା ।

ନେପଥ୍ୟେ ।—ଚଲୋ ଚଲୋ ।

[ ଅବଦୁଲ୍ଲା ଓ ପଠାଣର ପ୍ରବେଶ ଏବଂ ପରଶ୍ୱସହିତ ଭୋଜନ କରି ପାଦାଦ ନେଇ ସମସ୍ତଙ୍କର ପ୍ରସ୍ଥାନ ।

ନେପଥ୍ୟେ ।—( ଗୀତ )

ରଚିଣୀ ଗୌରଭୈରବୀ—ତାଳ ଅଡ଼ଖେମଟା ।
ଛି ଛି ଏ ଜୀବନ-ନାଟ ସଂସାର ପରାଣ-ପୂରେ ।
ସରବ ସକଳ କଥା ଏସଂ ନୀଚରୂପରେ । ପଦ ।
ହାତ ସ୍ୱର୍ଗସୁଖ ଛାଡ଼ି, ଏସନ ନରକେ ପଡ଼ି,
ଅନ୍ତେ କେ ପାରଇ ସୁଖ ଦୁଃଖ ତା ଅନନ୍ତପୂରେ । ୧ ।
ସଂସାର ମାୟାବନ୍ଧନ, କ୍ଷଣେ ତା ହୁଏ ଖଣ୍ଡନ,
ଅଜ୍ଞାନପଥେ ମାତିଲେ ବନ୍ଧନେ ପଡ଼ିବ ବଳେ । ୨ ।]

କୃଷ୍ଣ ।—( ଖଟରୁ ଉଠିବସି ମତୁଆଳୀ ପ୍ରାୟ ) ବଡ଼ ଗମ୍ଭତ ହେଲା—ବଂଶୀବାବୁ—ତୁମାକେ—ଅନ୍ଦକାର ମଜା କେମନ—କେମନ ଲାଗଲ—ବଡ଼ ଗମ୍ଭତ—ଏମନ ମଜା ଆର କଏ କରବ ?—ଗଙ୍ଗାଧର—ଭୁ ଲୁଅଡ଼େ ଗଲୁ—ଅରେ ଗଙ୍ଗା—ଗଙ୍ଗାଧର—ଅଜ୍ଜର ମଦ ବଡ଼ କଡ଼ା—ମୁଁ କାଳେ ଖାଇଥିଲି—ବାଣ୍ଡୁ ଖାଇଥିଲି—ବଲ୍ଲୀତାମଦ—ପେଟ ପଚନ୍ଦ

ହୋଇଗଲା—ଗଙ୍ଗା—ଏ ମଜା ଆମ୍ଭ ବାପ ଅଜାଙ୍କ—
କପାଳେ ନାହିଁ—ମୂର୍ଖ—ମରହଟ୍ଟି—ଗଙ୍ଗାଜଳ ପବିତ୍ର—
ଦଘଅଜଳ ପବିତ୍ର—ଯେ ସାତ ସମୁଦ୍ର—ତେର ଗଙ୍ଗା
ପାରହୋଇ ଆସୁଛି—ଯେ ତେପଟ ପବିତ୍ର ! ( ତଳେ ପଡ଼ି
ଖଟକୁ ଧରି ଛିଡ଼ା ହୋଇ ରହି ଯିବାର )—ପାଷଣ୍ଡ—ପାରି
ରେ—ପାରିବଢ—ତୁ କଉଁଠି ଅଛୁ ମ—ମଦେ ·କ ଅଜ
କଥା କହୁରୁ ନାହିଁ ?—ପାରି ଆମର ରୁଷିଛି—ମାନ
କରିଛି—କାଲି ବଣିଅ ତାକୁ ସୁନାର ଗହଣା—ବନାରସୀ-
ଶାଢ଼ୀ ଦେବ !—ପାରି—ପାଷଣ୍ଡ—ଅଁ—ମୋ ଧନ—ମୋ
ପ୍ରାଣ—ଉଃ !—ଘଣ୍ଟା କଣ ହେଉଛି—ଅଉ ଟିକିଏ ମଦ
—ଅବଦୁଲା—ଦୁଲା—ଦୁଲୁଲା—ଯେସସା ସଗପ—ଅରେ
ଅବଦୁଲା—ହୋଜା ଭାଇ—ଅବଦୁଲା—କେହି ନାହିଁ ?—
ସମସ୍ତେ ଚାଲିଗଲେ—ଚାଲିଗଲେ—କାଲ୍ ଦେଖେଙ୍ଗେ !—
ବାଈ ଆମର ଭଲ ଲୋକ (ବାଈ ଉପରେ ହାତ ପଡ଼ିଯିବାର)
—ଅଛ ଥଣ୍ଡା ଲୋକ—ସାବିଟିଏ—ପାରି !—କଥା କହ
ଟିକିଏ ମ—ଉଠ ମ—ଟିକିଏ ମଦ ଦେ ମ ।—କଥା କହୁରୁ
ନାହିଁ—କହୁରୁ ନାହିଁ—ତୋର ଇନସ୍ପେକ୍ଟର ଅଛି ପରା ?
—ଶାଳାର ବେଟା ଶାଳା—ଇନସ୍ପେକ୍ଟର !—ହିଁ ହିଁ—ତାର
ପାଇଁ ଏତେ ଗର୍ବ—ଅଚ୍ଛା !—କଥା କହିବୁ ନାହିଁ ?—
( କାନ୍ଥ ନିକଟକୁ ଯାଇ ଝୁଲୁଥିବା ଏକଖଣ୍ଡ ତରବାରି ଧରି )
—କଥା କହିବୁ ନାହିଁ—ହେଉ, ଥିବୁ ନା ଏପରି କହିବୁ
—ତୋତେ ମାରିବି—ମୁଁ ମରିବି—( ତରବାରି ଖୋଲି )
ତେବେବି କଥା କହିବୁ ନାହିଁ ?—ଦେଖିବୁ ?—
ତୋର ଜୀବନ ଗଲା—ଗଲା ( ତରବାରିରେ ବେକରେ
ଏକ ଚୋଟ ପ୍ରଦାନ ) ।

ପାର ।—( ଅଚେତନାବସ୍ଥାରେ ) ଏଁ —

କୃଷ୍ଣ ।—( ଚମକି ) ଅଉ ଗୋଟେ ( ଅନ୍ୟ ଏକଗୋଟ ପ୍ରଦାନ ) — ବସ୍ ମୂଣ୍ଡ ଛିଣ୍ଡି ଗଲା—ଯେସା କ୍ରି ଭେସା—ଯା ଇନସ୍ପେକ୍ଟର ଉଡକ—

ନେପଥ୍ୟେ ।—(ଘୋର କୋଳାହଳ ସ୍ୱରେ) ଏ ଖୁଣ—ଏ ଖୁଣ ।

[ ଦ୍ରୁତବେଗେ ଅବଦୁଲ୍ଲାର ପ୍ରବେଶ ।

ଅବ ।—ଅରେ ଖୁନ୍ ହୋଗିୟା—ହ୍ୟାଁ ସେ ଯଲ୍‌ଦ ବାବୁକୁ ଲେ ଚଲୋ ।

ଯବନିକା ପତନ ।

( ନେପଥ୍ୟେ ଗୀତ )

( ପୂର୍ବଗୀତସ୍ୱରରେ ଅବଶିଷ୍ଟ ଗୀତ ଗାୟନ )

ଛି ଛି ଶେଷେ ଏହି ଫଳ — କଳଙ୍କ କଳଙ୍କେ ପଡ଼ି,
ପ୍ରଭେଦ ନ ରହେ ତେବେ ଜଗତ ଓ ଯମଘରେ । ୩ ।
ଯେ ଜୀବନ ଆଜୀବନ ପାପ-ପଥେ ରଖେ ଧ୍ୟାନ,
ମନୁଷ୍ୟତା ସବୁ ତାର ଏହିରୂପ ଏକାଠିଲେ । ୪ ।

———

# ଚତୁର୍ଥ ଅଭିନୟ ।

ପ୍ରଥମ ଦୃଶ୍ୟ—କୃଷ୍ଣଚରଣର ବୈଠକଖାନା ବା ଶୟନାଗାର ।

[ କୃଷ୍ଣଚରଣ ବିଛଣାରେ ଏକାକୀ ଉପବିଷ୍ଟ ଓ ସମ୍ମୁଖେ ବାକ୍ସ ଏକଗୋଟା ଖୋଲା ହୋଇ ସଂସ୍ଥାପିତ । ]

କୃଷ୍ଣ ।—( ସ୍ୱଗତ ) ହାୟ ! ମୁଁ କ କର୍ମ କଲି ! ଧନ, ଯୌବନ, ପିତା, ମାତା, ସମସ୍ତ ଗଲା ! ! ସକାଳ ହୋଇ ଗଲାଣି—ପୁଲିସ ତ ଏହିକ୍ଷଣି ଆସିବ । ହାୟ ! ହାୟ ! ଅଉ ଦନେ

ଇନସ୍ପେକ୍ଟରଙ୍କୁ ବସାଇ କେତେ ମଦ ଖୁଆଇଛି, କାଲି ତାହାଙ୍କ ଡାକୁ ଗାଳି ଦେଇ ଫେରାଇ ଦେଲି ! ହାୟ ! ସବୁ ମୋର କପାଳର ଦୋଷ ! ଯୋଗକୁ ବ୍ରହ୍ମା ଖଟନ୍ତି ନାହିଁ ! ଏତେବେଳେ ଆଉ ଉପାୟ କି ?—ଯାହା କରିବ ।—ଆହା ! ଭାର୍ଯ୍ୟାକୁ ଅକାରଣ କାହିଁକି ଦଣ୍ଡ ଦେଇ ଆସିଲି—ଏସବୁ ତାର ଫଳ ।—ଏହିକ୍ଷଣି ପୁଲିସ ଆସିବ, ଏହିକ୍ଷଣି ସମସ୍ତେ ଜାଣିବେ—ଆଉ ବଞ୍ଚିକରି କି ଲାଭ ? ସରକାରର ଯେତେ ଟଙ୍କା ଖାଇ ଯାଇଛି ତା ବି ଧରା ପଡ଼ିବାର ସୂତ୍ର ଲାଗିଲାଣି—ସେ ଅର୍ଥ ପଡ଼ିଲେତ ଆଉ ରକ୍ଷା ନାହିଁ । ଏଣେ ବଞ୍ଚିବାର ତ ଭରସା ନାହିଁ—ଏଣେ ବଞ୍ଚିଲେ ବି ତେଣେ ପଡ଼ିବାକୁ ହେବ । ମୋ ପକ୍ଷେ ମରଣ ଶ୍ରେୟସ୍କର ।—ତେବେ ଆଉ ବିଳମ୍ବ କାହିଁକି ? ( ଦୀର୍ଘ-ନିଃଶ୍ୱାସ ତ୍ୟାଗପୂର୍ବକ ବାକ୍ସ ମଧ୍ୟରୁ ଏକ କାଗଜପୁଡ଼ିଆ ବାହାର କରି ଖୋଲି ଦେଖିବାର ) ଏହି ଶଙ୍ଖୁଆ—( ପୁଡ଼ି-ଆକୁ ଚୁମ୍ବିବାର ) ।—ଆହା ! ଏତେବେଳକୁ ତୁହି ମୋର ଏକମାତ୍ର ବନ୍ଧୁ—ମୁଁ ଆଉ ସଂସାରରେ କାହାରିକି ବନ୍ଧୁ ବୋଲି ଦେଖୁ ନାହିଁ ।—ହାୟ ! ମୋର କୃତକର୍ମ ମୋତେ ଭୋଗ କରିବାକୁ ପଡ଼ିଲା ! ବେଳସୁଁ ବାପ, ମା, ଭାର୍ଯ୍ୟାର କଥା ମାନିଥିଲେ କାହିଁକି ଏତେସବୁ ହୋଇଥାନ୍ତା ! ବାପା !—ମା !—ତୁମ୍ଭଙ୍କୁ ଏଇଠି ଦଣ୍ଡବତ (ଦଣ୍ଡବତ କରିଣ)—ମୋ-ତେ ବିଦାୟ ଦିଅ !—ରସମଞ୍ଜରି ! ( ଲୋତକ ମୋଚନ ) ମୋର ଦୋଷ କ୍ଷମା କରିବ—ମୁଁ ବଡ଼ ଅପରାଧୀ । ତୁମ୍ଭର କପାଳ !—ଆହା ! ଠିକଏ ହସିଖୁସି ହୋଇ ଭଲ ଘରୁ ଆସିଥାନ୍ତି ! ହାୟ ! କି ଦୁର୍ଯୋଗ ! ରସମଞ୍ଜରି ! ମୁଁ ବଡ଼ କୁସ୍ୱାମୀ ! ମୋ କଥା ମନେ ଘେନିବ ନାହିଁ !—ମୁଁ ତୁମ୍ଭଙ୍କୁ

ଭଗବାନଙ୍କ ହାତରେ ସମର୍ପି ଗଲ ! ( ନେତ୍ରକ ମୋଚନ ) ।
—ଆଉ ବଳମ୍ବ କାହିଁକ ?—( ଚତୁର୍ଦ୍ଦିଗ ନିରୀକ୍ଷଣ କରି ).
ଆଉ କାହିଁକ ?—ଏ ମାୟା ତ୍ୟାଗ କର । ଭଗବାନ୍ ! ମୋର
ପାପର ଦଣ୍ଡ ମୋର ହାତରେ ହେଲା ! ( ଶଙ୍ଖୁଆ ଭକ୍ଷଣ ଓ ଟିକିଏ
ପାଣି ପିଇ ବାକ୍ସ ବନ୍ଦ କରି ଅନ୍ୟତ୍ର ରଖିଦେଇ )—
ଯାଁ—ଯାହା ହେବାର ଥିଲା ହୋଇଗଲା । ( ଶୟନ ) ।

[ ପୁଲିସ ଇନସ୍ପେକ୍ଟର, ଜ ୬ ଣ କନେଷ୍ଟବଲ,
ପରଶୁ, ଅନାଦ ଓ ଗଙ୍ଗାଧରର ପ୍ରବେଶ ।

ଇନ ।—ଉଏଲ୍, କାହାଁ ହେ କୃଷ୍ଣଚରଣ ? —ଏ କୋନ୍ ଶୁର୍ଥି ?
ପର ।—( ଗୋପସଂଯୁକ୍ତ ବଜଳସ୍ୱରେ ) ଅଜ୍ଞା ସେଇ କୃଷ୍ଣବାବୁ ।
ଇନ ।—ହାଁ ହାଁ ଓ କୃଷ୍ଣଚରଣ ହେ । ( ସ୍ୱଗତ ) ବେଟା କାଲ୍
ଘରେ ଅବାର ଅମାକେ ହାଁକିଏ ଦସ୍ତେରେ—ଏଖନ ଦିଛି
ମଜାଠା ଦେଖିୟେ । ( ପ୍ରକାଶ୍ୟେ ) ଉଏଲ୍, କୃଷ୍ଣଚରଣ !
କୃଷ୍ଣ ।—( ଧୀରେ ଉଠିବସି ସ୍ୱଗତ ). ହାୟ ! ଏହା ଅଗେ କ ମଲି
କାହିଁକି ?
ଇନ ।—ଉଏଲ୍, ମୁଁ ମେ ଯବାବ ନେହିଁ ?—ୟେ ପରଶୁ ଦାବ
କରଦାହେ, ତୁମ୍ ଗୟା ରାତକୁ ପାଙ୍ଗଣ ବାଇକୁ ଖୁନ୍
କିୟା—ଯବାବ ଦୋ—ଖୁନ୍ କିୟା ୟା ନେହିଁ !
କୃଷ ।—( ସ୍ୱଗତ ) ଜଗଦୀଶ୍ୱର ! ଆଉ କାହିଁକି କଷ୍ଟ ଦେଉଛନ୍ତି ।
ରେ ଶଙ୍ଖୁଆ ! ତୋର କି ମୋପ୍ରତି ଲେଶମାତ୍ର ଦୟା ନାହିଁ ?
ଇନ ।—କ୍ୟା ହେ ଯବାବ ଦେତା ନେହିଁ ? ଦେଖୋ କନେଷ୍ଟ-
ବଲ !—ଲଗାଓ ଯୋଡ ।
କୃଷ ।—(ସଭୟେ) ହଁ ମୁଁ ମାରିଚି—( ବାକ୍ସ କରିବାର ) ।
ଇନ —ଅସାମୀ ଏକ୍ରାର୍ ହେ ।—ଏ କ୍ୟା ? ନଶା କ୍ୟା ଅବ୍‌ତକ
ଛୁଟ୍‌ତା ନେହିଁ ?

କୃଷ୍ଣ ।—( ପୁନର୍ବାର ବମନ ଓ ବିକଟ ମୁଖଭଙ୍ଗୀ ଏବଂ ପେଟମର୍ଦ୍ଦନ ) ।

ଜନୈକ କନେଷ୍ଟବଲ ।—ହଜୁର୍ ଓ ମାଲୁମ ହୋତା ହେ କୁଛ୍ ଖାୟା ହେ—ଖାନେ ନଶାକା ଏସା ମାଲୁମ ନେହିଁ ହୋତା ।

ଇନ ।—ଅଚ୍ଛା ।—ତୁମ ଦୌଡ଼କେ ଯଲ୍ଦ ଡାକ୍ତର ସାହେବକୁ ଲେଅଓ—ଯଲ୍ଦ !

[ କନେଷ୍ଟବଲର ପ୍ରସ୍ଥାନ ।

ଦେଖୋ ଗଙ୍ଗାଧର, ତୁମ୍ ବରାବର ଉସ୍‌କା ସାଥ୍ ରହେତା ବୋଲ୍ନେ ଓ କ୍ୟା ଖାୟା ହେ !

ଗଙ୍ଗା ।—( ସଭୟେ ହାତ ଯୋଡ଼ ) ହଜୁର୍ ହାମ୍ ତ କୁଛ ଜାନ୍‌ତା ନାହିଁ—ହାମ୍ ତ ଏହିକ୍ଷଣି ଅସିକା ଦେଖତେ ଏସା ଅବସ୍ଥା ।

ଇନ ।—ଉଏଲ୍ ଅନାଦ, ତୁମ୍ ଉସ୍‌କା ନୌକର୍—ତୁମ୍‌କୁ ସବ୍ ମାଲୁମ୍—ବୋଲୋ ଓ କ୍ୟା ଖାୟା !

ଅନା ।—( ଭୟରେ କୃତାଞ୍ଜଳି ହୋଇ ) ହଜୁର ! ମୁଁ କିଛି ଜାଣେ ନାହିଁ ।—ମୁଁ ମୂରୁଖ ।

ଇନ ।—କ୍ୟା ? ମୂରୁଖ ।—ମୂରଖ ହୋନେସେ କ୍ୟା ନଜର୍ କରନେ ନେହି ସକ୍‌ତା ହେ ?—ତୁମ୍‌ଲୋକ ସବ୍ ଛୁପାତା ହେ !—ଅମୀର ! ଯେ ଦୋନୋକୁ ଗୁରୁକୁ ଲଗାଓ ।

[ ଅମୀର କନେଷ୍ଟବଲ ଅନାଦ ଓ ଗଙ୍ଗାଧରଙ୍କୁ ଗୁରୁକରେ ପ୍ରହାର କରଣ ।

ଅନାଦ ଓ ଗଙ୍ଗା—( ସରୋଦନ ) ମାଲୋ, ମଲି ଲୋ । ଦୋହାଇ ଇନସ୍ପେକ୍ଟର ସାହେବ—ଅମେ କିଛି ଜାଣୁଁ ନାହିଁ ।

ଇନ ।—ଅମୀର ! ଓ ବାକସ୍ ଖୋଲ୍କେ ଦେଖୋ ଉସ୍‌ମେ କ୍ୟା ହେ ଦେଖା ଯାୟେଗା ।

ଅମୀ ।—( ବାକ୍‌ସ ଦେଖି ) ଏଠୋ ବନ୍ଦ ହେ ।

ଇନ ।—ତୋଡ଼ୋ ଉସ୍‌କୁ !

ଅମୀ ।—( ବାକ୍‌ସ ଭାଙ୍ଗି ହୁଇ ଗୁଲିଟା ପୁଡ଼ିଆ ବାହାର କରି ଇନସ୍ପେକ୍ଟରଙ୍କୁ ଦେବାର ) ।

ଇନ ।—( ଉତ୍ତମରୂପେ ଦେଖି ) ଅରେ ଏକ୍‌ଠା ଶଙ୍ଖୁଆ ହେ । ଏ ଆଦ୍‌ମୀନେ ଶଙ୍ଖୁଆ ଖାୟା ।

କୃଷ୍ଣ ।—( ପୁନର୍ବାର ବମନ ଓ କୁନ୍ଥାଇବାରୁ ଓ ପୂର୍ବବତ୍ ମୁଖଭଙ୍ଗି ଏବଂ ପେଟମର୍ଦ୍ଦନ କରୁ ) ମାଲୋ ମୁ ମରିଗଲି !

[ ବୈଷ୍ଣବର ପ୍ରବେଶ ।

ବୈଷ୍ଣ ।—( ଲମ୍ବଭାବେ ଇନ୍‌ସ୍‌ପେକ୍‌ଟରର ପାଦତଳେ ପଡ଼ି ) ଦୋହାଇ ଇନସ୍ପେକ୍‌ଟର୍ ସାହେବ—ଓ ଅପ୍‌ନା ଲଡ଼୍‌କା ।

ଇନ ।—ଅରେ କୁଚ୍ ଘାବ୍‌ଡ଼ାଓ ମତ୍ ନା ଖାଲି ବୋଲ୍‌ତା ।

ବୈଷ୍ଣ ।—( ଉଠି ବସି ) ମୁ ଗରିବ ଲୋକ—ଶଏ ଟଙ୍କା ଅଣିଛି ।

ଇନ ।—ଶଏ ରୁପେୟା କ୍ୟା ହୋଗା—ଏକହଜାର ରୁପେୟା ଦେନେ ପଡ଼େଗା । ଏ ସଙ୍ଗୀନ ମୋକଦ୍ଦମା ।

ବୈଷ୍ଣ ।—ଦୋହାଇ ଇନସ୍ପେକ୍‌ଟର ସାହେବ—ମୁ ଆଉ କାହିଁରୁ ପାଇବି—ଆଉ ପଚ୍ଛକେ ଶଏ ଟଙ୍କା ଧାର କରି ଦେବି—ଏ ଟଙ୍କା ରଖ—ମୋତେ ରକ୍ଷା କର ।

[ ପ୍ରଥମ କନେଷ୍ଟବଲର ପ୍ରବେଶ ।

ଇନ ।—ଉଏଲ୍—ଡାକ୍ତର ସାହେବ ଆୟା ?—ଗୁଡ୍ ମର୍ଣ୍ଣିଙ୍ଗ !

[ ଡାକ୍ତର ସାହେବଙ୍କର ପ୍ରବେଶ ।

This man has eaten—this—this—

ଶଙ୍ଖୁଆ ( ପୁଡ଼ିଆ ସବୁ ଡାକ୍ତରଙ୍କ ହାତକୁ ଦେବାର ) ।

ଡାକ୍ତ ।—( ପୁଡ଼ିଆ ଦେଖି ) Yes—Arsenic—Very strong Arsenic. ( କୃଷ୍ଣର ମୁଖ, ଜିହ୍ୱା ଓ ଓକାଳଥିବା ପଦାର୍ଥ ଦେଖି ) send him at once to the hospital. ( ଗମନୋଦ୍ୟତ ) ।

ବୈଷ୍ଣ ।—( ଗୋଡ଼ତଳେ ପଡ଼ି ) ଦୋହାଇ ଡାକ୍ତର ସାହେବ!—

ହଜୁରଙ୍କ ହୁକୁମରେ ସବୁ ଅଛି—ମୁଁ ଗରିବ ଲୋକ ଷଏଟି ଟଙ୍କା ଦେବି—ବେଶୀ ଦେଇ ପାରିବି ନାହିଁ ।

ଡାକ୍ତ ।—ୱେଲ୍, ଇଧର୍ ଆଓ ।

[ ଡାକ୍ତର ସାହେବ ଓ ବୈଷ୍ଣବର ପ୍ରସ୍ଥାନ ।

ଇନ ।—ଦେଖୋ—ଇସ୍‌କୁ ହାମାରା ବଗିମେ ଲେକେ ବୈଠାଓ—ଯଲ୍‌ଦି ହସ୍‌ପିତାଲକୁ ଯାନେ ହୋଗା ।

କନେଷ୍ଟବଲମାନେ ।—ଯୋ ହୁକୁମ ( କୃଷ୍ଣଚରଣକୁ ଧରାଧରି କରି ନେଇ ଯିବାର ) ।

[ ବୈଷ୍ଣବଚରଣର ପ୍ରବେଶ ।

ଇନ ।—ହାମ୍ ଏକ ହଜାରସେ କମ୍ ନେହି ଲେଗା ।—ଡାକ୍ତର ସାହେବକୁ କ୍ୟା ଦିୟା ?

ବୈଷ୍ଣ ।—ସେହି ଶଏ ଟଙ୍କା ।—ହଉ ମୁଁ ଆପଣଙ୍କୁ ପାଞ୍ଚଶ ଦେବି—ମୋ ପୁଅକୁ ରକ୍ଷା କରନ୍ତୁ । ( ଇନସ୍ପେକ୍‌ଟରକୁ ଶଏ ଟଙ୍କା ପ୍ରଦାନ ) ।

ଇନ ।—( ଟଙ୍କା ନେଇ ) ହାମ୍ ବୋଲ୍‌ଦେତା—ଏକ ହଜାରସେ ଏକ ରୂପେୟା କମ୍ ହୋନେସେ ତୁମାରା ଅଚ୍ଛା ନେହି ହୋଗା—ବାକୀ ରୂପେୟା କାଲ୍ ଲେ ଆଓ ।

[ ଇନସ୍ପେକ୍‌ଟରର ପ୍ରସ୍ଥାନ ।

ବୈଷ୍ଣବ ।—ହ ମୂର୍ଖୋନ୍ତ କାମ କଲା—ମୋର ତ ଘରଦ୍ୱାର ବନ୍ଧଲେ ଏତେ ଟଙ୍କା ହେବ ନାହିଁ ! ( ମୁଣ୍ଡ ହୋଡ଼ି ହେବାର ) ।

ପଟକ୍ଷେପଣ ।

— — —

ଦ୍ୱିତୀୟ ଦୃଶ୍ୟ—ଜଜ ସାହେବଙ୍କ ଇଜଲାସ ।

[ ଦୃଣ୍ଡି ମିଶଲ୍; ଜଜ ସାହେବ ନିବିଷ୍ଟମନେ କାଗଜପତ୍ର ଦେଖି ରାୟ ଲେଖିବାରେ ନିଯୁକ୍ତ; ବାମପାର୍ଶ୍ୱରେ ପେସ୍‌କାର ଉପବିଷ୍ଟ

ଓ ସମ୍ମୁଖେ ନଥି ସଂସ୍ଥାପିତ; ପେସ୍କାର ପଶ୍ଚାଦ୍ଭାଗରେ ଜ ୧ ଣ ଚପରାସୀ ଦଣ୍ଡାୟମାନ; ମିଶଲର ଏକପାର୍ଶ୍ୱରେ ଆସାମୀ କୃଷ୍ଣଚରଣ ଓ ତତ୍ପାର୍ଶ୍ୱେ ଜଣେ କନେଷ୍ଟବଲ ଦଣ୍ଡାୟମାନ, ସାହେବଙ୍କ ସମ୍ମୁଖରେ ଜଣେ ଓକିଲ ଓ ହେଡ଼ କନେଷ୍ଟବଲ ଚୌକୀରେ ଉପବିଷ୍ଟ ଓ ମିସଲତଳେ ଲୋକାରଣ୍ୟ ଏବଂ ତନ୍ମଧ୍ୟେ ବଂଶୀବଦନ, ଗଙ୍ଗାଧର ଓ ବୈଷ୍ଣବଚରଣ ପ୍ରଭୃତି ଉପସ୍ଥିତ । ]

ଜନୈକ ଚପରାଶୀ ।—( ମିସଲ ଆଗକୁ ଆସି ଉଚ୍ଚସ୍ୱରେ ) ଗ୍ରେପ୍ ଗ୍ରେପ୍ । ( ଫେରି ଯାଇ ସ୍ୱସ୍ଥାନେ ଦଣ୍ଡାୟମାନ ) ।

କୃଷ୍ଣ ।—( କନେଷ୍ଟବଲକୁ ଧୀରସ୍ୱରେ ) ଗୋଡ଼ ହଟା ବଡ଼ ଦୋହାଇ ହେଉଛି—ଟିକିଏ ବସନ୍ତି ?

କନେ ।—( ତେଜ ହୋଇ ) ନେହିଁ—ହିଁଆ ବୈଠନେକା ହୁକୁମ ନେହିଁ—ୟେ ବୈଠନେକା ଯଗା ଅସ୍ୱେସକା ଜାଗା ନେହି ହେ ।

କୃଷ୍ଣ ।—( ସ୍ୱଗତ ) ମରିବାପାଇଁ ଏତେ ଯତ୍ନ କରି ଯେତେବେଳେ ମରି ପାରି ନାହିଁ ମୋ କପାଳେ ବନ୍ଧୁକ ଫାନ୍ସି ଅଛି !—ଭଗବନ୍ ! ତୁମ୍ଭେ ଭରସା !

ଗଙ୍ଗା ।—( ସ୍ୱଗତ ) ମୋର କଥା ସରିଲା । କୃଷ୍ଣଟି ଥିଲାବୋଲି ଦୁଇପଇସା ମିଳୁଥିଲା—ସେ ଗଲେ ଆଉ କିଏ ଦେବ ?

ବଂଶୀ ।—ହାଁରେ ଗଙ୍ଗାଧର ! କେମନ ହୟେଛେ ? ଯେମନ୍ କାଜ୍ ! ଆମି ତଖନ୍ ତୋକେ ବାର୍ ବାର୍ ବଲ୍ଚି ଏତ ମଦ ଖାସ୍ନେ, ଏତ ମଦ ଖାସ୍ନେ, ତୁଇ ତ ମାନ୍ବାର୍ ଛେଲେ ! ଏଖନ୍ ଯେମନ୍ କାଜ୍ ତେମ୍ନି ଫଲ ।

ଗଙ୍ଗା ।—ମୋ ସଙ୍ଗରେ କଥା କହ ନା ବଂଶୀବାବୁ ! ମୋର ମନ୍ଟା କେମନ ହେଇ ଯାଉଛି ।

ବଂଶୀ ।—( ସ୍ୱଗତ ) ଏ ବେଟାରଓ ବେଶ୍ ହୟେଛେ—ବେଟା ନୂଆଡ଼ି ହୟେଛିଲ ।—ଏଖନ୍ ଖୁବ୍ ଖେଟେ ବେଟାରୁ

ଏକ୍‌ଟୁ ବୁଝି ବ୍ଲୁଯ୍ୟେରେ । ( ପ୍ରକାଶ୍ୟେ ) ଗଙ୍ଗାଧର ! ତୋ-ଙ୍କେ ଯେ ଇନସ୍ପେକ୍‌ଟର ସେଦିନ ଗୃହୁକେ ମାରିଲେ କ୍ଷୁଇ ନାଲିସ୍ କରିଲନ୍ତ୍ରେ ?

ଗଙ୍ଗା ।—ବଂଶୀବାବୁ ! ତୁମେ କେନ ମୋ ସାଙ୍ଗରେ ଲାଗିଯ୍ୟେଚ ? ( ଅନ୍ୟତ୍ର ଗମନ ) ।

ଚପ ।—( ଧୃଷ୍ଟସ୍ୱାଯ୍ୟ ) ଗ୍ରେପ୍ ଗ୍ରେପ୍ ।

ବୈଷ୍ଣ ।—( ସ୍ୱଗତ ) ମୋଚେତ କିଛି ଭଲ ଦିଶୁ ନାହିଁ—ସଟେ ଠାକୁରେ ଜଜସାହେବଙ୍କ କଣ୍ଠରେ ବସିବେ—ମୋର ପୁଅ ଖଲାସ ହେବ ? ଯେତେ ଓକିଲଙ୍କ ଭିତ ଗଲ ସମସ୍ତେ ବେଶିବେଶି ଟଙ୍କା ଖୋଜିଲେ—ମୁ ଏବେ ଦନ ପଚିଶ-ଟଙ୍କା କୁଆଡ଼ୁ ଆଣିବ ? ସେ ମହାଜନ ବେଶ୍ୟାପତି ଚେତ୍‌ଇ ଚେଚୋଟି ଟଙ୍କା ଦେଲା ବୋଲି ଡାକ୍ତର ଆଉ ଇନସ୍ପେକ୍-ଟରକୁ ବୋଧ କରଦେଲ । ଇନସ୍ପେକ୍‌ଟରଟା ବଡ଼ ବାହାପିଯ୍ୟା—ଟଙ୍କା ନେଇକରିବ କିଛି କଲା ନାହିଁ—ଗୋ-ଟାଏ ଓକିଲ ଛିଡ଼ା କରିଥିଲେ ଯାହା ହୋଇଥାନ୍ତା—ଦ୍ବ୍ଲଅଣ କରବ—ମୋର କପାଳ !

ଜଜ ।—( ଗର୍ଧ୍ୟ ଲେଖିଶାଉ ) ଦଫ୍‌ତର—

[ ଦପ୍ତରର ପ୍ରବେଶ ।

( ଦପ୍ତରି ହାତକୁ ସଫୁକାଗଜ ବଢ଼ାଇଦେବାର ଓ ଦ୍ୱଲମ ବାମୁଡ଼ି ଘୁଷିବାଇ । )

ଦପ୍ତ ।—( ସଫୁକାଗଜ ଛୁଷ୍ଟି ଓ ସୁତାରେ ବୁନ୍ଧି ଜଜ ସାହେବଙ୍କ ସମ୍ମୁଖରେ ସ୍ଥାପନ ) ।

ଜଜ ।—( ଟିକିଏ ଘୁଷ ଦସ୍ତଖତ କର ତାରିଖ ଦେଇ ) ଫାଶୀ । ( ସଫୁ ଓ କାଗଜପତ୍ରାଦ ପେସ୍‌କାର ଆଡ଼କୁ ବଢ଼ାଇଦେବାର ) ।

ପେସ୍‌କାର ।—( କାଗଜାଦ ନେଇ ) କୃଷ୍ଣଚରଣ ।—

[ କନେଷ୍ଟବଲ ଓ କୃଷ୍ଣଚରଣ ପେସ୍-
କାରଆଡ଼କୁ ଟିକିଏ ଅଗ୍ରସର ହୋଇ-
ଯାଇ ଦଣ୍ଡାୟମାନ ।

ତୁମକୁ ପାର୍ବତୀ ବାଈକୁ ଇଚ୍ଛାପୂର୍ବକ ପ୍ରାଣରେ ମାରପକାଇ-
ଥିବା ଅପରାଧରେ ଫାଶିର ହୁକୁମ ହେଲା ।

କୃଷ୍ଣ ।—( ହୁକୁମ ଶୁଣି କାଷ୍ଠବତ୍ ହୋଇଯିବାର ) ।

କନେ ।—( କୃଷ୍ଣଚରଣର ବାହୁ ଧରି ) ଚଲୋ । ( କୃଷ୍ଣଚରଣଙ୍କୁ
ନେଇ ଯିବାର ) ।

ଲୋକେ ।—( ଗୋଲ୍ମାଲ୍ କରି ଉଠିବାର ) ।

ଚପ୍ ।—( ଅଗ୍ରସର ହୋଇ ଉଚ୍ଚୈଃସ୍ୱରେ ) ଯାଓ—ଯାଓ ସବ୍—
ଗୋଲମାଲ ମତ୍ କରୋ—ଯାଓ ।

ବୈଷ୍ଣ ।—(ଉଚ୍ଚସ୍ୱରେ ) ମୋ କୃଷ୍ଣରେ—( ଅଚେତନ ହୋଇ
ଭୂତଳେ ପତନ ) ।

ପେସ୍ ।—( ଉଠି ) ଦେଖୋ—ଚପ୍‌ରାସୀ ? କ୍ୟା ହୁଆ ?

ଯବନିକା ପତନ ।

( ନେପଥ୍ୟେ ଗୀତ )

ରାଗିଣୀ ପିଲୁ—ତାଳ ଖେମ୍‌ଟା ।

ଏହି ରେ ଚରମ ଫଳ ଚରମ ସଜା ।
ମଜା ବୋଲି ମଜୁଥିଲୁ ଏହି ସେ ମଜା । ପଦ ।
ଘର, ଦ୍ୱାର, ଧନ, ପ୍ରାଣ, ପିତା, ମାତା, ବନ୍ଧୁଜନ,
ଅଉ ସେ ପ୍ରିୟତମା ପ୍ରାଣସମ ଚରମେ ହଜା । ୧ ।
ଯେତେ ମନ ମନସ୍ୱାଧ, ବହି ତେତେ କଲୁ ବାଦ,
ଏବେ ଅବିରତ ଅପବାଦ-ନାଗରା ବଜା । ୨ ।
ମନ କଲେ କେଉଁକାଳେ, ପାପୀ କରେ ମରପାରେ,
ତାର ପ୍ରତିଫଳ ନଷ୍ଟେ ଯେବେ ବୁଝିବ ହଜା । ୩ ।

# ପଞ୍ଚମ ଅଭିନୟ ।

ପ୍ରଥମଦୃଶ୍ୟ—ରସମଞ୍ଜରୀର ଶୟନାଗାର ।

[ ରସମଞ୍ଜରୀ ଶଯ୍ୟୋପରି ଶୟାନା ; ପାର୍ଶ୍ୱେ ଯମୁନା ଓ ହରଦାସୀ ଉପବିଷ୍ଟା । ]

ହର ।—ଆଜକାଲି ସଂସାରର ଏହି ରୀତି ।—ମା ବାପଙ୍କୁ ମାନୁ ନାହାନ୍ତି ।—ବୋହୂଟା ସଢ଼ିଗଲାଣି ।

ଯମୁନା ।—( ବିକଳସ୍ୱରେ ) ମାତା ! ବେଲର କି ଆଉ ଅବସ୍ଥା ଅଛି ? ସେ ଏଥର ବଞ୍ଚିବ ? ମାଡ଼ ଖାଇ ତା ଦେହ ଯେପରି ହୋଇଥିଲା ଦେଖିଥିଲ—ଆହା ! ଏକେ ସୁକୁମାରୀ, ତହିଁରେ ପୁଣି ସେ ମାଡ଼—ତା ଉପରେ ମାତା ! ସେ ହାଜତକୁ ଯିବାର ଶୁଣିଲା ଦିନରୁ ଜର—ତାପ—କେତେବେଳେ ଚେତନା ଅଛି ତ କେତେବେଳେ ନାହିଁ ।

ହର ।—( ଚୁଚୁକାର କରି ) ଆହା !

ଯମୁ ।—ଏଣିକି ଖାଇବା ପିଇବାରେ କଷ୍ଟ ପଡ଼ିବ । ସେଇତ ସେ-ଜଞ୍ଜର କରୁଥିଲା—ଯାହା କରୁ ଗୋଟାଏ ଭରସା ଥିଲା—ଆଉ କିଏ ସେ ଖଲାସ ହେବ ?—( ଦୀର୍ଘନିଃଶ୍ୱାସ ତ୍ୟାଗ-କରି ) ଆଜକାଲି ଅନେକ ଲୋକ ନିଶା ଖାଇ ଦାସୀ ରଖୁଛନ୍ତି—ଆପଣା ଓଜନରେ ଥିଲେ ହେବ ନା ।

ହର ।—( ଦୀର୍ଘନିଶ୍ୱାସ ତ୍ୟାଗ କରି ) ସେଭଳି ଲୋକ କି ଓଜନରେ ରହିପାରନ୍ତି ?

ଯମୁ ।—ସେ ତ ଏପରି ଅଛି ଯାଙ୍କୁ ଦେଖ କେତେ ପାଣି ହେଉଛି ! ସଦାବେଳେ ଜର—କଥା କହିବାର ଶକ୍ୟ ନାହିଁ । ( କାନ୍ଦ-ଲପ୍ରାପ୍ତ ) ଏ କଣ ବଞ୍ଚିବ ? ମୋତେତ ଯା କେବେ ପରତେ ହଉ ନାହିଁ ! ( ଲୁହ ପୋଛି ) ମାତା ! ବେଲ ସାଙ୍ଗେ ମୂ-

ସରଗଲଣି—ଦେଖ ମୋର ଗଲେ, ମାତା ! ମୁଁ ବି ଦେଖ ସାଙ୍ଗେ ସାଙ୍ଗେ ଯିବି ।

ହର ।—ଛି ଯମୁନା ! ତୁ ଏମନ୍ତେ ହେଉଛୁ କାହାକୁ କହିବ ।

ରସ ।—( ଧୀରସ୍ୱରେ ) ମା !—ମା !

ଯମୁ ।—ଦେଖ ! ମା ଏଠି କାହାନ୍ତି ?

ରସ ।—ମା—ନାହିଁ—ମୋ—ମା ( ଲୋତକ ବିହ୍ୱାର )—

ଯମୁ ।—( ଲୁହ ପୋଛିଦେଇ ବାଳକରେ ) ଦେଖ ! ଛି କାନ୍ଦୁଛ କାହିଁକି ?

ହର ।—( ବାଳକଙ୍କୁ ) ବୋହୂ, ଅପୂ[illegible]ଅ । ଏମନ୍ତ ହେଲେ କଣ ହେବ !

ରସ ।—ମୋ—ଜୀବନ—ଯାଉ—ନାଇ ।

ହର ।—ଛି ଛି ! ତୁନି ହୁଅ । ଲୁହ ଗଡ଼ାଅ ନା ।

ଯମୁ ।—( କାନ୍ଦଣା ପ୍ରାୟ ) ମାତା ! ଏହି ଦଦସ୍ତ ଜାବ ଯେନ ମୋ ଜୀବନ—ଯେବେ ଏ ଜାହ୍ନା ବୁଡ଼ିବ ମୁଁ ବି ସାଙ୍ଗେ ସାଙ୍ଗେ ବୁଡ଼ିଯିବି ! ( କ୍ରନ୍ଦନ ) ।

ହର ।—ଛି ଯମୁନା ! ସେମେତେ ବାମ୍ବୁଣୀପର କାହିଁକି ହେଉଛୁ ! ( ଚଟୁକାର ହର ଗୀତ ) ।

ରାଗିଣୀ ଶଙ୍କର—ତାଳ ଅଡ଼ାଠେକା ।

କସ ପାଇ ବଞ୍ଚିବ ରେ ଲତା କହ ବାର ଅହା !
ସୁକୁମାରୀ ପ୍ରେମଲତା ଜୀବେ ଯିବ ଧାଉ ଅହା ! ପଦ ।
ରମଣୀ ପ୍ରେମ-ଲତିକା, ସୁଅଗ-ବନ-ଜୀବିକା,
ପୁରୁଷ-ଆଦର ବିନା କାହିଁ ହେବ ପାଉ ଅହା ! ୧ ।

ରସ ।—ମାତା ! ତୁମ ଜୀବନ ସାର୍ଥ !

ହର ।—ଅହା ! ମୋ ଜୀବନ ତୁମ ସୁଖରେ ଯିବା ସାର୍ଥକ—ତୁମେତ ଏମତେ ଅଥୟ ହେଉଛ—

ରସ ।—ଅଥଯ୍ୟ—ମୋ, ଆଶା—ଛଳ୍ପ !

ଦ୍ୱର ।—ଛି ବୋନ୍ତ ! ସେମେତେ କାହିଁକି କନ୍ଦୁଚ !

ଯମୁ ।—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ମାତା ! ସେହିପରି ଟିକିଏ ଗୀତ ଗାଅ—ତୁମ ଗୀତ ଶୁଣି ବେଲ ଟିକିଏ ନିଶ୍ୱାସ ମାରିଲି ।

ଦ୍ୱର ।—କଅଣ ଗାଇବି ଯମୁନା ! ମୋ ମନ ଖାଲି ଯାଆ ହୋଇ ଯାଉଚ ! ( ଗୀତ )

ରାଗିଣୀ ବସନ୍ତ—ତାଳ ଅଡ଼ାଠେକା ।

ବଢ଼ାଇଥିଲ ଅଦପ ସାଧ ଶରଧାରେ ଜେତେ ।
ସଫଳେ ଶୁଖି ସେ ଗଲା ଗଲା ଆଶା ଥିଲା ଯେତେ । ପଦ ।
ଯେ ଦନ ରୋପଣ କଲି, ଦାତେ ଆଣି ଲଗାଇଲି,
କରେ ବାନ୍ଧି ବଢ଼ମ୍ଭନା ଆଶାକୁ ନସ୍କଣା ଏତେ । ୧ ।

ରସ ।—ମୁଁ—କଣ—ଦେବ—ମାତା !—ମୋ—ଜୀବନ ତୁମକୁ ଦେଲି ।

ଦ୍ୱର ।—ମୋର ସେଇଯ୍ୟା ଘେର !

ଯମୁ ।—ବେଲ ! ଜୀବନଟା ଯେ ତାଙ୍କୁ ଦେଲି—ଅଥଯ୍ୟ ହେଲେ ହବ ନା—ଅଥଯ୍ୟ ଜୀବନ ନେଇ ସେ କଣ କରିବେ ?

ରସ ।—ମୁଁ—ଥଯ୍ୟ—ମଲେ—ମା !—

[ କନକଲତାର ପ୍ରବେଶ ।

କନ ।—( ରସମଞ୍ଜରୀ ପାର୍ଶ୍ୱରେ ବସି ) ମାତା ! ବୋହୂର ଅବସ୍ଥା ଦେଖୁଚ—ମୁଁ ଏବେ ଶ୍ୱଶୁରଅନ୍ତୁ ହଟହଟା ହେଲି !

ଦ୍ୱାର ।—ତୁମେ ଏତେ ଖବର କାହିଁକି—ସଦରକୁ ଖବରଟା ଅସବ—ଟିକିଏ ଥଯ୍ୟ ହୁଅ ।

କନ ।—ମାତା ! ମୁଁ ସରଗଲିଣି । (କାନ୍ଦି) ମୁଁ ଆଜ ସ୍ୱପ୍ନ ଦେଖିଲି ମୋ ଦୁଃଖୀଧନକୁ ଫାଶିର ହୁକୁମ ହେଲଚ ।

ହର —(ଜିହ୍ୱା ଦଂଶନ କରି) ଆହା ! ସ୍ୱପନ କଥାଟା ସତ ମଣିର ?
—ଛି ! ଭାବ ନାହିଁ।

କନ।—ଅଉ କାନ୍ଦିଲେ କଣ ହବ—ପରଘରୁ ଚିଠିଟିଏ ଆଣି ଘାଣ୍ଟି ହେଲ—ମୋ କପାଳ ! ( କ୍ରନ୍ଦନ )।

[ ଅନାଦର ପ୍ରବେଶ

ଯମୁ।—ହେଲ ଅନାଦ ଆସିଲାଣି—କରେ ଖବର କଣ ?

ଅନା।—( କ୍ରନ୍ଦନ )।

କନ।—କରେ କାନ୍ଥକୁ ଚାହିଁକି—( କ୍ରନ୍ଦନସ୍ୱରେ ) ହାୟ ରେ ମଥୁରା-ବାର୍ତ୍ତା !

ରସ।—( ଦୀର୍ଘନିଶ୍ୱାସ ତ୍ୟାଗ କରି ) ମା !

ଅନା।—(କାନ୍ଦି)ସାନ ସାଆନ୍ତଙ୍କୁ ଫାଶିର ହୁକୁମ ହେଲା—ଆଠଦିନ ଭିତରେ ଫାଶି ଯାଇବେ। ( ଉଚ୍ଚସ୍ୱରେ କ୍ରନ୍ଦନ। )

କନ।—କରେ କଥଣ କହୁଚ୍ ( ଅଚେତନ ହୋଇ ପଡ଼ିବାର )।

ରସ।—ମାଆ !—( ମୁଣ୍ଡକୁ ହାତ ଧରାଇ ହାତ ତଳେ ପଡ଼ି-ଯିବାର )।

ହର।—(କ୍ରନ୍ଦନସ୍ୱରେ)ମଥୁରା ବାର୍ତ୍ତା ଆଇଲା—କଣ୍ଠରୁ ସୁଧା ମଲା !

ଯମୁ।—( ଉଚ୍ଚ କ୍ରନ୍ଦନସ୍ୱରେ ) ଅନାଦ ! ପାଣି ଆଣ ରେ—ଅନାଦ ! ( କ୍ରନ୍ଦନ )।

[ ଅନାଦର ଦ୍ରୁତ ରଙ୍ଗଭୂମିରୁ ପ୍ରସ୍ଥାନ।

( ଯବନିକାପତନ )

( ନେପଥ୍ୟ ଗୀତ )

ରାମପ୍ରସାଦୀସ୍ୱର। ତାଳ ଏକତାଳୀ।

ଚାଲ ମନ ଭବ ଛାଡ଼ି।

ଝଡ଼ି ଚାଲ ରେ ନରକପୁରୀ। ପଦ।

ଥିଲେ ଲୋକେ ପୁରାକାଳେ, ଧର୍ମପଥେ ସ୍ୱବଶରେ,

ଏଣ୍ଟେ ଅଧର୍ମରୂପୀ ଦାନବ ଦେଲାଣି ରେ ଭବ ପାରୁ । ୧ ।
ମୋକ୍ଷେ ଯଦ୍ ଥିବୁ ଆଶ, ତବେ ନ ହର ରେ ବାସ,
ଛାଡ଼ି ବଚନ ବନ୍ଧୁଙ୍କୁ ଯାଇ ଦୀନବନ୍ଧୁ ଦ୍ୱାର ଦ୍ୱାରୁ । ୨ ।
ଘୋର ଦେଖ କଳିକାଳ, ନାଶଯିବ ଏ ସଂସାର,
ଛଣି ଧିବୁ ଭୁଞ୍ଜ କଳିକାଳ ଭକ୍ତି-ଯୋଗେ ଧନ ସାରୁ । ୩ ।

ସମ୍ପୂର୍ଣ୍ଣ ।

---